# ତିରୁ
# କୁରାଲ

(ତାମିଲ ମରେ-ତାମିଲ ବେଦ)

## ତାମିଲ ମହାକବି ତିରୁବଲ୍ଲୁବର



ହିନ୍ଦୀଲେଖା : ଡ. ରବୀନ୍ଦ୍ର କୁମାର ସେଠ

ଓଡ଼ିଆ ଭାଷାନ୍ତର : ଶ୍ରୀ ନିରଞ୍ଜନ ପଣ୍ଡା

# ତିରୁକ୍କୁରଲ

(ତାମିଲ ମରୈ-ତାମିଲ ବେଦ)



(ତିରୁବଲ୍ଲୁବରଙ୍କ ପ୍ରତିମା)

ହିନ୍ଦୀଲେଖା : ଡ. ରବୀନ୍ଦ୍ର କୁମାର ସେଠ

ଓଡ଼ିଆ ଭାଷାନ୍ତର : ଶ୍ରୀ ନିରଞ୍ଜନ ପଣ୍ଡା

# ତିରୁକ୍କୁରଳ

(ତାମିଲ ମରୈ-ତାମିଲ ବେଦ)

ହିନ୍ଦୀଲେଖା : ଡ. ରବୀନ୍ଦ୍ର କୁମାର ସେଠ

ଓଡ଼ିଆ ଭାଷାନ୍ତର :

ଶ୍ରୀ ନିରଞ୍ଜନ ପଣ୍ଡା

ପ୍ରକାଶକ :

ବିଷ୍ଣୁପ୍ରିୟା ପବ୍ଲିକେଶନ୍

ସୁଧା ଭବନ, ପାନସାରୋଳ, ଗୋପାଳପୁର,

ନାଲିବର, ଜି.-ଜଗତସିଂହପୁର

ମୋ.-୯୪୩୭୫୧୧୬୦୩

ପ୍ରଥମ ସଂସ୍କରଣ :

ନେତ୍ରୋତ୍ସବ, ୨୦୧୯

ପ୍ରଚ୍ଛଦପଟ :

ଶ୍ରୀ ସୁକାନ୍ତ ବେହେରା

ଗୋପାଳସାଗର

ମୁଦ୍ରଣ :

ପଞ୍ଚିମେଶ୍ୱର ପ୍ରେସ, ଜଗତସିଂହପୁର

ମୂଲ୍ୟ : ଟ.୮୦/-



# କଥାପଦେ

ରାଷ୍ଟ୍ରୀୟ ଭାବାତ୍ମକ ଏକତାର ପ୍ରକୃଷ୍ଟ ମାଧ୍ୟମ ହେଉଛି ସାହିତ୍ୟ । ଯେଉଁ ଭାଷାରେ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ହୁଏ, ସେହି ଭାଷା ଗୌରବ ବିମଣ୍ଡିତ ହୁଏ । ପୁନରାୟ ଭାଷାକୁ ନେଇ ସାହିତ୍ୟ । ଭାଷା ନଥିଲେ ସାହିତ୍ୟ ନାହିଁ । ଯେଉଁ ଭାଷା ଯେତେ ଉନ୍ନତ, ତାର ସାହିତ୍ୟ ସେତେ ବୈଭବଶାଳୀ । ଛୋଟବଡ଼ ହୋଇ ଭାରତରେ ପ୍ରାୟ ଦୁଇଶହରୁ ବେଶୀ ଭାଷାର ପ୍ରଚଳନ ଦେଖିବାକୁ ମିଳେ । ତନ୍ମଧ୍ୟରୁ ମାତ୍ର କେତୋଟି ଭାଷା ଉନ୍ନତ ହୋଇ ସାହିତ୍ୟ ଜଗତରେ ପ୍ରତିଷ୍ଠା ଅର୍ଜନ କରିଛି । ବର୍ତ୍ତମାନ ଭାଷାର ପ୍ରମୁଖ ଭାଗରେ ଅଛନ୍ତି କନ୍ନଡ଼, ତାମିଲ, ବଙ୍ଗଳା ଇତ୍ୟାଦି । ଏହା ଆଜି ପର୍ଯ୍ୟନ୍ତ କନ୍ନଡ଼ ଭାଷାରେ ଲିଖିତ ପୁସ୍ତକ ଜ୍ଞାନପୀଠ ପୁରସ୍କାରର ସିଂହଭାଗ ହାସଲ କରିଛି, ଏହାପରେ ତାମିଲ, ବଙ୍ଗଳା ଓ ଅନ୍ୟାନ୍ୟ ଭାଷା । ଏବେ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ଯେ ତାମିଲ ଓ ବଙ୍ଗାଳୀ ଜାତିର ଭାଷା ଅସ୍ମିତା ରହିଛି । ସେମାନଙ୍କୁ ଇଂରେଜୀ ଭାଷାରେ ପ୍ରଶ୍ନ କରାଗଲେ ମଧ୍ୟ ସେମାନେ ନିଜ ଭାଷାରେ ଉତ୍ତର ଦିଅନ୍ତି, ଏହା ନୁହେଁ ଯେ ସେମାନଙ୍କୁ ଇଂରେଜୀ ଭାଷା ଜଣା ନାହିଁ ।

ଭାରତରେ ପ୍ରାଚୀନ କାଳରୁ ତାମିଲ ଭାଷା ଓ ସାହିତ୍ୟ ଯେ ବହୁ ସମୃଦ୍ଧ ଏହା ସ୍ୱୀକାର୍ଯ୍ୟ । ଏହି ଭାଷା ସଂସ୍କୃତ ଭାଷାକୁ ଆପଣା ଭଉଣୀ ବୋଲି ସ୍ୱୀକାର କରି ଆପଣା ସ୍ୱାତନ୍ତ୍ର୍ୟ ବଜାୟ ରଖିଛି । ସଂସ୍କୃତ ଭାଷାରେ ନିଜକୁ ପ୍ରତିଷ୍ଠିତ କରିଛି । ତାମିଲମାନେ କହୁଥିଲେ– 'ହେ ଶିବ, ଆରିଅନ୍ କଣ୍ଡେ, ତାମିଲନ୍ କଣ୍ଡେ' ହେ ଶିବ, ତୁମେ ହେଉଛ ଆର୍ଯ୍ୟ, ତୁମେ ହେଉଛ ତାମିଲ । ଏହାର ଉତ୍ତରରେ କନ୍ନଡ଼ କବି ସୁଲିଦ ବାଳେୟ ଶ୍ଳୋକରେ ପଚାରିଛନ୍ତି–'କନ୍ନଡ଼ ଭାଷା ମଧ୍ୟ ଚୋପାଛଡ଼ା କଦଳୀ ପରି, ଏଥିରେ କ'ଣ ନାହିଁ ଯେ ତୁମେ ସଂସ୍କୃତ ଆଡ଼କୁ ମୁହାଁଇଛ ?'

ଭାରତର ବିଭିନ୍ନ ଭାଷା ସାହିତ୍ୟର ଭାବ ବିନିମୟର ଆବଶ୍ୟକତା ଅନିବାର୍ଯ୍ୟ । ଏଣୁ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରଫେସର ଡା. ରବୀନ୍ଦ୍ର କୁମାର ସେଠ ସହସ୍ର ବର୍ଷ ପୂର୍ବ ବହୁ ପ୍ରାଚୀନ ଓ ଉନ୍ନତ ତାମିଲ ମହାକାବ୍ୟ ତିରୁକ୍କୁରଳକୁ ହିନ୍ଦୀ ଭାଷାରେ ବିଶ୍ଳେଷଣ କରି ସାହିତ୍ୟ ସାଧକଙ୍କ ମହାନ୍ ଉପକାର କରିଛନ୍ତି । ହିନ୍ଦୀ ଓ ତାମିଲ ଉଭୟ ଭାଷାରେ ସେ ବିଶିଷ୍ଟ ବିଦ୍ୱାନ । ତେଣୁ ଉଭୟ ଭାଷା ମଧ୍ୟରେ ଏକ ପ୍ରଶସ୍ତ ସେତୁ ପ୍ରତିଷ୍ଠା କରିଛନ୍ତି; ଯଦ୍ୱାରା ରାଷ୍ଟ୍ରର ସାହିତ୍ୟ, ଚିନ୍ତନ ତଥା ଜ୍ଞାନର ଭାବାତ୍ମକ ଏକତା ନିର୍ମାଣ ହେଉଛି ।

ଡ. ସେଠଙ୍କ ତାମିଲ ମହାକାବ୍ୟ ତିରୁକ୍କୁରଳର ଚୟନ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏହା ମହାକବି ତିରୁବଲ୍ଲୁବରଙ୍କ ଦ୍ୱାରା ବିରଚିତ । ସେ ତାମିଲ ଭାଷାରେ ଆଦିକବି ସାରଳାଦାସଙ୍କ ସଦୃଶ । ତିରୁକ୍କୁରଳ ଦେଶ, କାଳ, ସୀମାରହିତ ଏକ ଅନାବଦ୍ଧ ରଚନା । ଯାହାକି ବିଶ୍ୱବିଖ୍ୟାତ ହୋଇ, ପୃଥିବୀର ବହୁ ଭାଷାରେ ଅନୁବାଦିତ ହୋଇଛି । ତାମିଲଭାଷୀ ଏହି ମହାକାବ୍ୟକୁ 'ତାମିଲ ମରୈ' ଅର୍ଥାତ୍ 'ତାମିଲ୍ ବେଦ' କହି ବହୁ ଆଦର ଓ ସମ୍ମାନ କରନ୍ତି । ସେମାନଙ୍କ ମତରେ ପ୍ରତ୍ୟେକ କୁରଳ ଏକ ଏକ ବୈଦିକ ଋଚା ।

ମୂଳ ତାମିଲ ସ୍ରୋତ ଉପରେ ଆଧାରିତ 'ତିରୁକୁରଳ'କୁ ବିଶ୍ୱବନ୍ଧୁତ୍ୱ ଓ ମାନବୀୟ ମୂଲ୍ୟବୋଧ ତଥା ରାଷ୍ଟ୍ରୀୟ ଭାବାତ୍ମକ ଓ ସାଂସ୍କୃତିକ ଏକତା ଦୃଷ୍ଟିରୁ ଡ. ସେଠ ଏହାକୁ ହିନ୍ଦୀ ଭାଷାରେ ସମୀକ୍ଷା କରିଛନ୍ତି । ପ୍ରକାଶ ଥାଉକି, ଭାବର ଆଦାନପ୍ରଦାନ ଉଦ୍ଦେଶ୍ୟରେ ହିନ୍ଦୀ ଭାଷାରୁ ଓଡ଼ିଆ ଭାଷାରେ ଏହାର ଅନୁବାଦର ନିତାନ୍ତ ଆବଶ୍ୟକତା ରହିଛି । ଆଶା ଓ ବିଶ୍ୱାସ, ଏହି କ୍ଷୁଦ୍ର ପ୍ରୟାସକୁ ଓଡ଼ିଆ ସାହିତ୍ୟର ସାରସ୍ୱତ ସାଧକ ନିଶ୍ଚିତ ସ୍ୱାଗତ କରିବେ ।

॥ ଅନୁସୃଜକ ॥



# ପ୍ରସ୍ତାବନା

ଭୌଗଳିକ, ଐତିହାସିକ, ବୈବିଧ ତଥା ବାହ୍ୟ ବୈଚିତ୍ର୍ୟ ଥିବା ସତ୍ତ୍ୱେବି ଆମ ଦେଶର ଅଖଣ୍ଡ ସଂସ୍କୃତିରେ ଜୀବନ ସୂତ୍ରର ଏକ ବିଚାର ବିମୁକ୍ତ ସର୍ବତ୍ର ଦୃଷ୍ଟିଗତ ହୁଏ । ମନୀଷିମାନଙ୍କ ବିଚାର ସାହିତ୍ୟ ଏବଂ ପରମ୍ପରା ମାଧ୍ୟମରେ ଜନ ମାନସରେ ବ୍ୟାପ୍ତହୋଇଯାଇଅଛି । ସାଧକ, ସାହିତ୍ୟକାର ସେମାନଙ୍କ ବିଚାରର ଅଭିବ୍ୟକ୍ତିପୁଞ୍ଜ ସମୟେ ସମୟେ ଓ ସ୍ଥାନେ ସ୍ଥାନେ ପ୍ରକଟିତ ହୁଅନ୍ତି । ଯେପରି ଗଙ୍ଗା, କାବେରୀ, ନର୍ମଦା, ଓ ଝେଲମ୍ ଆଦି ନଦୀଗୁଡ଼ିକ ଅନାଦି କାଳରୁ ଏ ଦେଶରେ ପ୍ରବାହିତ ହୋଇ ନିର୍ମଳ ଜଳ ସିଞ୍ଚନ କରି ଆସୁଛନ୍ତି – ସେପରି ସଂସ୍କୃତିର ସ୍ରୋତ ରାଷ୍ଟ୍ରୀୟ ଜୀବନକୁ ଉଚ୍ଛ୍ୱସିତ ଓ ଉଲ୍ଲସିତ କରିଆସୁଅଛି । ଯୁଗ ବଦଳୁଛି, ସ୍ଥାନ ବଦଳୁଛି, ବେଶଭୂଷା ଖାଦ୍ୟପେୟ ବଦଳୁଛି, ବିଚାର ଓ ଭାବର ଉପଯୋଗିତା ମଧ୍ୟ ବଦଳୁଛି କିନ୍ତୁ ବିଚାରର ସ୍ରୋତ, ଚିନ୍ତନର କେନ୍ଦ୍ର ନିଜର ନିରନ୍ତରତାରେ ଆମ୍ଭମାନଙ୍କୁ ଆକୃଷ୍ଟ କରିଆସୁଅଛି ।ଯାହା ସୁଦୂର ବୋଲି ପ୍ରତୀତ ହେଉଛି, ତାହା ନିକଟରେ ପହଞ୍ଚିଲେ ସେ ଦୂରତ୍ୱ ଆଉ ପ୍ରତୀୟମାନ ହେଉନାହିଁ ।

ମହାକବି ତିରୁବଲ୍ଲୁବର ଆମ ରାଷ୍ଟ୍ରୀୟ ଚିନ୍ତନ, ଧର୍ମ, ଦର୍ଶନ, ବିଚାର, ବ୍ୟବହାର ଆଦି ସୁଦୀର୍ଘ ପରମ୍ପରାର ମହତ୍ୱପୂର୍ଣ୍ଣ ଆଦର୍ଶ । ତାମିଲ ପ୍ରଦେଶର ଜନମାନସରେ ଏହି ଋଷିଙ୍କ କାବ୍ୟ ଓ ଚିନ୍ତନର ଯଥେଷ୍ଟ ପ୍ରଭାବ ବିସ୍ତାର କରିଛି । ସେ ଆଦର୍ଶର ପ୍ରତିପାଦକ ଏବଂ ବ୍ୟାବାହାରିକ ଜ୍ଞାନର ଆଧାର ହୋଇ ରହିଛନ୍ତି । ତାଙ୍କ ମହାକାବ୍ୟ ଉପନିଷଦର ସୂକ୍ଷ୍ମ ଚିନ୍ତନ, ବୌଦ୍ଧଧାରାର ଧୈର୍ଯ୍ୟ ଓ ଦୃଢ଼ତା, ମନୁସ୍ମୃତି ଓ କୌଟିଲ୍ୟଙ୍କ ବିଚାର ଶୈଳୀର ବିବିଧତା ଏବଂ ଅଦ୍ଭୁତ ପ୍ରତିପାଦନ କ୍ଷମତା, କବୀରଙ୍କ ସ୍ପଷ୍ଟବାଦିତା ଏବଂ ସର୍ବୋପରି ଶୃଙ୍ଗାରତାର ନିଛକ ଚିତ୍ରଣ ବହନ କରିଛି । ପରବର୍ତ୍ତୀ ତାମିଲ୍ ସାହିତ୍ୟର ଅନେକ କାବ୍ୟ ଓ କୃତି ତାଙ୍କଦ୍ୱାରା ପ୍ରଭାବିତ ହୋଇଛନ୍ତି ।

ତାଙ୍କ ମହାକାବ୍ୟ 'ତିରୁକ୍କୁରଲ୍'ର ଭାବଭୂମି ଅତ୍ୟନ୍ତ ବିସ୍ତୃତ । ଜୀବନର ସାମ୍ଭବ୍ୟ ଉପଲବ୍ଧି ଏବଂ ଏତଦ୍ ସମ୍ବନ୍ଧୀୟ ବିକାଶ ସମ୍ଭାବନାର ବିବେଚନ କଳ୍ପନାଶ୍ରିତ

ହୋଇ ରହି ନାହିଁ; ପରନ୍ତୁ ପରମ୍ପରାର ସମ୍ଯକ୍ ବିଶ୍ଳେଷଣ, ସ୍ୱାନୁଭୂତି ଏବଂ ଯୁଗବୋଧର ଆଧାର ହୋଇ ଦେଶକାଳର ଉର୍ଦ୍ଧ୍ୱକୁ ଯାଇଛି । ତାଙ୍କ ସାହିତ୍ୟରେ ଭାକ୍ତିକ ଅଥବା ରହସ୍ୟବାଦ ଲେଶ ମାତ୍ର ଚିତ୍ରଣ ନାହିଁ, ଯାହା ଅଛି ମାନବ ଜୀବନର ସମସ୍ତ ଆଦର୍ଶ-ଆଧୃତ ଚିତ୍ର । ସେ ସମାଜର  ବିକୃତି ଓ କୁରୂପକତାକୁ ସଂଯତ ଢ଼ଙ୍ଗରେ ଚିତ୍ରଣ କରିଛନ୍ତି । ଉପନିଷଦର ଶ୍ରେୟ-ପ୍ରେୟର ବିବେଚନ ସେଥିରେ ସ୍ଥାନିତ ନ ହୋଇ ଏକ ବିଶିଷ୍ଟ ଧରଣର ମୂଲ୍ୟ-ସଂହିତା ଅବଶ୍ୟ ଉପସ୍ଥାପିତ ହୋଇଛି । ତାଙ୍କ କୃତିର ଲକ୍ଷ୍ୟ ହେଉଛି ମାନବ ଓ ମାନବିକ ମୂଲ୍ୟବୋଧ । ତାଙ୍କ ପ୍ରତିପାଦିତ ଆଦର୍ଶ ପ୍ରତ୍ୟେକ ଭାଷା, ଧର୍ମ, ଜାତି, ସମ୍ପ୍ରଦାୟ, ପ୍ରାନ୍ତ ଓ ଦେଶର ମାନବ ନିମନ୍ତେ ଉଦ୍ଦିଷ୍ଟ ।

ତାମିଲ ଭାଷାର 'ସଂଘମ୍-ସାହିତ୍ୟ' ଅତ୍ୟନ୍ତ ସମୃଦ୍ଧ । ଏଥିରେ 'ତୋଲକାପ୍ପିୟମ୍' ନାମକ ବ୍ୟାକରଣ ଓ କାବ୍ୟଶାସ୍ତ୍ର 'ଏଟ୍‌ଟୁ ତୋଖୈ' (ଅଷ୍ଟ ପଦ୍ୟ ସଂଗ୍ରହ) ତଥା 'ପତ୍ତୁ ପାଟ୍‌ଟୁ' (ଦଶ ଦୀର୍ଘ କବିତା)ର ଅଧ୍ୟୟନ ତାମିଲ୍ ପ୍ରାଚୀନ ସାହିତ୍ୟର  ଅନ୍ତର୍ଗତ । ତିରୁକ୍କୁରଲ କାବ୍ୟରେ ଏହାର ଉଲ୍ଲେଖ ମଧ୍ୟ ଅଛି । ତାମିଲ୍ ସାହିତ୍ୟକୁ  ମହାକବି ତିରୁବଲ୍ଲୁବରଙ୍କ ଦାନ ଅତୁଳନୀୟ ହୋଇ ରହିଛି । ସର୍ବୋପରି ଭାରତୀୟ ସାହିତ୍ୟରେ  ଏହି ମହାକବିଙ୍କ ସ୍ଥାନ ବିଶିଷ୍ଟଭାବେ ସ୍ଥାନିତ ହୋଇଛି । ତାଙ୍କ କୃତି ସର୍ବକାଳୀନ ହୋଇ ରହିଛି ଏବଂ ମାନବ ମୂଲ୍ୟ ଓ ଜୀବନାଦର୍ଶ ଦୃଷ୍ଟିରୁ ମହାର୍ଘ । ବିଶ୍ୱର ପ୍ରତ୍ୟେକ ମାନବ ନିଜର ଅଭିରୁଚି ଅନୁଯାୟୀ ମାର୍ଗଦର୍ଶନ ଲାଭ କରିଛନ୍ତି । ମହାକବିଙ୍କ ସାହିତ୍ୟ ସାଧନାକୃତି ଦେଶ କାଳାତୀତ ।

ରାଷ୍ଟ୍ରୀୟ ଶିକ୍ଷାନୀତି ଦୃଷ୍ଟିରୁ ଶିକ୍ଷାଶାସ୍ତ୍ର, ଶିକ୍ଷାନୀତି ନାୟକ ମହାକବିଙ୍କ କୃତିକୁ ମାନ୍ୟତା ଦେବା ନିତାନ୍ତ ଆବଶ୍ୟକ । କାବ୍ୟ କୃତିର ଉପାଦେୟତାକୁ ଲକ୍ଷ୍ୟ ରଖି ପ୍ରଚାର ଓ ପ୍ରସାର  କରିବା ବର୍ତ୍ତମାନ ଅତ୍ୟନ୍ତ ଜରୁରୀ ।

ମହାକବିଙ୍କ କାବ୍ୟକୃତିର କାଳନିର୍ଦ୍ଧାରଣ ଆବଶ୍ୟକତା ଉପଲବ୍ଧ ହେଉଛି । ତାଙ୍କ ଧର୍ମ ବିଷୟକ ମାନ୍ୟତା ଏବଂ ଦାର୍ଶନିକ ଚିନ୍ତନର  ବିଶ୍ଳେଷଣ ପରିବେଷଣ କରାଯାଇଛି । ଧର୍ମର ଦୁଇଟି ମାର୍ଗ-ପ୍ରବୃତ୍ତି ଓ ନିବୃତ୍ତି । ଧର୍ମପରକ ରୂପରେ ମନ, ବଚନ ଓ କର୍ମରେ  କିପରି ପ୍ରତିଫଳିତ ହେବ ବଲ୍ଲୁବର ମହାକାବ୍ୟରେ  ଆଲୋଚନା କରିଛନ୍ତି । ପୁନଶ୍ଚ ଏହା ସମଷ୍ଟିଗତ ରୂପରେ ଲୋକାଚାର, ଅପରିଗ୍ରହ, ପରସ୍ତ୍ରୀ

ବର୍ଜନ, ପରୋପକାର, ଦାନ, କୃତଜ୍ଞତା ଆଦି ବିଷୟ ମଧ୍ୟ ଉଲ୍ଲେଖ କରିଛନ୍ତି । ମହାକବି କୌଣସି ଧର୍ମବିଶେଷର ସିଦ୍ଧାନ୍ତ ଅଥବା ମାନ୍ୟତା ପ୍ରତି ଗୁରୁତ୍ୱ ଦେଇ ନାହାନ୍ତି । ସେ ଆଧାରଭୂତ, ସର୍ବଧର୍ମ ସ୍ୱୀକୃତ ମାନବ ମୂଲ୍ୟର ପ୍ରତିପାଦନ କରିଛନ୍ତି । ଏହି ମୂଳ ସିଦ୍ଧାନ୍ତକୁ ବିଶ୍ଳେଷଣ ଆଦି କରି ସହୃଦୟ ପାଠକଙ୍କ ନିଜସ୍ୱ ଚିନ୍ତନ ଓ ବିଚାରର କ୍ଷମତା ଉପରେ ଛାଡ଼ିଦେଇଛନ୍ତି । ମାନବର ବିକାଶ ପ୍ରକ୍ରିୟା ଉପରେ ସମ୍ୟକ୍ ବିଚାର ମଧ୍ୟ କରିଛନ୍ତି । ତାଙ୍କର ଅର୍ଥ (ପୋରୁଲ୍)ର ବ୍ୟାଖ୍ୟାନ ସର୍ବାଧିକ ବିସ୍ତୃତ ଅର୍ଥ ଉପରେ ଆଧାରିତ ହୋଇଛି । ଏଥି ମଧ୍ୟରେ ଶିକ୍ଷାର ମହତ୍ତ୍ୱ ସଜ୍ଜନଙ୍କ ସହିତ ମୈତ୍ରୀ, କୁସଙ୍ଗ ତ୍ୟାଗ, ସଦ୍ ବ୍ୟବହାର, ନିର୍ମଳ ବିଧିବିଧାନ, ଶକ୍ତି, କାଳ, ସ୍ଥଳର ବୋଧ ଇତ୍ୟାଦି ବିଷୟ ଉପରେ ଆଲୋଚିତ ହୋଇଛି । ସାମାଜିକ ଜୀବନରେ ଦୁର୍ବଳ ପକ୍ଷର ଚିତ୍ରଣ ବେଳେ ମୂଢ଼ତା, ନିଚତା ଓ ଅହଙ୍କାର ଉପରେ କବିଙ୍କ ଦୃଷ୍ଟି ନିବଦ୍ଧ ହୋଇଛି । ଯିଏ ସେ ଯୁଗରେ ରାଜା ଏବେ ନେତା ଭାବେ ପରିଚିତ । ସେମାନଙ୍କ ନିମିତ୍ତ ମାର୍ଗଦର୍ଶକ ଆଦର୍ଶ ତଥା ବ୍ୟାବହାରିକ ପକ୍ଷର ଚିତ୍ରଣ କରାଯାଇଛି । ଧନସମ୍ପତ୍ତି ବିତରଣରେ ଅସନ୍ତୁଳନ ଯୋଗୁଁ ପ୍ରୟୋଜନ ବିହୀନ ସମ୍ପତ୍ତି, ଦାରିଦ୍ର୍ୟତା ତଥା ଯାତନାର ସ୍ଥିତି ଉପସ୍ଥିତ ହୁଏ । ଏଥିରେ ସାମାଜିକ ବୈଷମ୍ୟ ନିହିତ । ତେଣୁ ଆଦର୍ଶ ପ୍ରତିପାଦନ ନିମିତ୍ତ କବି ବଲ୍ଲୁବର ସମ୍ପତ୍ତିର ଲକ୍ଷ୍ୟ ଲୋକକଲ୍ୟାଣ ଭାବନାରେ ପରୋପକାର ନିମିତ୍ତ ଉପଯୋଗିତା ରୂପରେ ବିଶେଷ ଧ୍ୟାନ ଦେଇଛନ୍ତି । ପ୍ରଶାସନର ଅଧିକାରୀବର୍ଗଙ୍କ ଶୃଙ୍ଖଳା ଓ କାର୍ଯ୍ୟକାରିତା ସମ୍ବନ୍ଧରେ ମଧ ଆଲୋକପାତ କରିଛନ୍ତି । ତାମିଲ୍ ସାହିତ୍ୟର ବିଶିଷ୍ଟ ପରମ୍ପରା ଅବଲମ୍ବନରେ ତିରୁବଲ୍ଲୁବର ଶୃଙ୍ଗାର ବର୍ଣ୍ଣନା ବେଳେ ସଂଭୋଗ ଶୃଙ୍ଗାର ଓ ବିପ୍ରଲମ୍ଭ ଶୃଙ୍ଗାର ଉଭୟ ସମ୍ପର୍କରେ ଆଲୋକପାତ କରିଛନ୍ତି । ଏହି ପ୍ରସଙ୍ଗରେ ସେ ମନୋବୈଜ୍ଞାନିକ ଦୃଷ୍ଟିକୋଣରେ ପ୍ରତ୍ୟକ୍ଷ ପ୍ରମାଣ ଦେଇଛନ୍ତି । ତତ୍କାଳୀନ ସାମାଜିକ ସ୍ଥିତି ଚିତ୍ରଣ ବେଳେ ଯୁଗବୋଧ, ଜୁଆ, ବେଶ୍ୟାବୃତ୍ତି ଇତ୍ୟାଦି ସାମାଜିକ ଦୋଷାଦି ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ କୃଷିର ମହତ୍ତ୍ୱ, ସନ୍ନ୍ୟାସୀ, ପଥଚ୍ୟୁତ ତପସ୍ୱୀଙ୍କ ବିଷୟରେ ବିଶେଷ ସୂଚନା ମଧ୍ୟ ଦେଇଛନ୍ତି । ତଦୁପରାନ୍ତ ମନୁସ୍ମୃତି,କୌଟିଲ୍ୟ ଅର୍ଥଶାସ୍ତ୍ର, ମହାଭାରତ ଇତ୍ୟାଦିର ପ୍ରଭାବ ତାଙ୍କ କାବ୍ୟକୃତିରେ ପରିସ୍ଫୁଟନ ହୋଇଥିବାର ଦୃଷ୍ଟି ଗୋଚର ହୁଏ ।

ସାମାଜିକ ପରିବେଶ, ଆର୍ଥିକ ସଂରଚନା ଏବଂ ରାଜନୈତିକ ପରିସ୍ଥିତିରେ ଯେପରି ଭାରତବାସୀ ବର୍ତ୍ତମାନ ଅସ୍ଥିର ଅବସ୍ଥାରେ ଅଛନ୍ତି, ଏ ହେଉଛି ସମୟର ସଙ୍କ୍ରାନ୍ତି କାଳ । ସତ୍ୟ, ନ୍ୟାୟ, ଅହିଂସା, ତ୍ୟାଗ, ମୈତ୍ରୀ, ନିଷ୍କାମ କର୍ମ ଇତ୍ୟାଦି ଶବ୍ଦର ଅର୍ଥ ପରିବର୍ତ୍ତନ ହୋଇନାହିଁ, କିନ୍ତୁ ଏହାର ଅର୍ଥ ସମ୍ପୂର୍ଣ୍ଣ ଭାବେ ସମାପ୍ତ ହୋଇଅଛି । ଜାତି, ଭାଷା, ଧର୍ମ, ଦର୍ଶନ, ପ୍ରାନ୍ତ ଆଦିର ଉପଯୋଗ 'ସ୍ୱାର୍ଥ' ର ସୀମା ମଧ୍ୟରେ ଆବଦ୍ଧ ହୋଇଛି । ତଥାପି ଆଶାର କିରଣ ନିରନ୍ତର ପୂର୍ବ ଦିଶାରେ ଉଦୟ ହେଉଛି । 'ସତ୍ୟ' ଅନ୍ୟାୟ, ଅତ୍ୟାଚାର, ଅସତ୍ୟ ଏବଂ ମିଥ୍ୟା ଚକ୍ରରୁ ମୁକ୍ତ ହୋଇ ସଦା ସର୍ବଦା ଜାଗ୍ରତ ହେବାରେ ଲାଗିଛି । ଏବେ ବି ରାଷ୍ଟ୍ରର ଅନେକ ଶୁଭଚିନ୍ତକ, ସାହିତ୍ୟକାର, ରାଷ୍ଟ୍ରପ୍ରେମୀ ଦେଶର ପୁନଃନିର୍ମାଣ ଓ ବାସ୍ତବିକ ବିକାଶ ନିମିତ୍ତ ଅବିରତ ନିଷ୍ଠାପୂର୍ବକ କର୍ମରତ । ମହାକବି ତିରୁବଲ୍ଲୁବରଙ୍କ ସାହିତ୍ୟ ଓ ଚିନ୍ତନ ରାଷ୍ଟ୍ରୀୟ ଭାବାତ୍ମକ ଏକତାକୁ ନିରନ୍ତର ଉଜ୍ଜୀବିତ କରୁ, ଏତିକି ମାତ୍ର କାମନା ।

ଡ. ରବୀନ୍ଦ୍ର କୁମାର ସେଠ



# ପୁସ୍ତକ ସୂଚୀ





# ପ୍ରଥମଅଧ୍ୟାୟ

## ତିରୁବଲ୍ଲୁବର : ଭାରତୀୟ ସାହିତ୍ୟର ଗୌରବ

ତିରୁକ୍କୁରଳ ଏକ ମୁକ୍ତକ କାବ୍ୟ । ଏହାର ପ୍ରତ୍ୟେକ ପଦ ପୃଥକ୍ ପୃଥକ୍ ମୋତି ସଦୃଶ ବିଶିଷ୍ଟ ବ୍ୟକ୍ତିତ୍ୱ ଦ୍ୱାରା ସଂଯୁକ୍ତ । ପ୍ରତ୍ୟେକ ପଦ ସ୍ୱତନ୍ତ୍ର ରୂପରେ ପୂର୍ଣ୍ଣ ଅର୍ଥର ଦ୍ୟୋତକ ଅଟେ । ଏହି ରଚନାରେ ଆଦ୍ୟୋପ୍ରାନ୍ତ ଏକ ସମ୍ବନ୍ଧ ସୂତ୍ର ଏବଂ ଧାରାବାହିକ ଭାବରେ ଗ୍ରନ୍ଥିତ । ନିଶ୍ଚିତ ସିଦ୍ଧ ଯେ, ଏହା ଏକ ସଂଗ୍ରହ ଗ୍ରନ୍ଥ ନୁହେଁ, ବରଂ ଏକ ପୂର୍ଣ୍ଣ କ୍ରମବଦ୍ଧ ରଚନା – ମୋକ୍ଷ ପ୍ରାପ୍ତି ନିମିତ୍ତ ପ୍ରଶସ୍ତ ସୋପାନ ତ୍ରୟ - ଧର୍ମ (ଅରମ୍), ଅର୍ଥ (ପୋରୁଲ୍), କାମ (ଇନ୍‌ବମ୍) ।

ଅହର ମୁଦଲ, ଏକୁତ୍ତେଲ୍ଲାମ୍ ଆଦି ଭଗବନ୍ ମୁଦତ୍ରେ ଉଲହୁ (କୁରଳ-୧)

"ସମସ୍ତ ବର୍ଣ୍ଣମାଳା ମଧ୍ୟରେ ଆଦି ଅକ୍ଷର 'ଅ' ଅଟେ, ସେପରି
ସୃଷ୍ଟିର ଆଦି ସ୍ରୋତ ହେଉଛନ୍ତି ଭଗବାନ୍ ।"

ତାମିଲ୍ ସାହିତ୍ୟ ଏବଂ ସଂସ୍କୃତିର ବିଶାଳ ପରମ୍ପରା ମଧ୍ୟରେ ତିରୁବଲ୍ଲୁବର ଏବଂ ତାଙ୍କ ଗ୍ରନ୍ଥ ତିରୁକ୍କୁରଳର ଅଦ୍ୱିତୀୟ ସ୍ଥାନ ଅଛି । ତାଙ୍କର ଏହି ଗ୍ରନ୍ଥର କାବ୍ୟ ସୌନ୍ଦର୍ଯ୍ୟ, ଏଥିରେ ନିହିତ ସନ୍ଦେଶ ଅନେକ ଭାରତୀୟ ତଥା ପାଶ୍ଚାତ୍ୟ ବିଦ୍ୱାନ୍‌ଙ୍କୁ ଅଭିଭୂତ କରିଛି । ଦେଶ କାଳର ପ୍ରବାହ ସୀମାଦ୍ୱାରା ଅନାବଦ୍ଧ, ମାନବ ଜୀବନ ମୂଲ୍ୟଦ୍ୱାରା ନିର୍ଦ୍ଦେଶିତ ପ୍ରବଳ ବିଚାରକ ଏବଂ ଶ୍ରେଷ୍ଠ କବି ଭାବେ ତିରୁବଲ୍ଲୁବରଙ୍କ ମହିମା ଭାରତୀୟ ଓ ବିଦେଶୀ ବିଦ୍ୱାନମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ଡ଼କ୍ଟର ସୁ. ଶଙ୍କର ରାଜୁ ନାଇଡୁ କହନ୍ତି- "ତିରୁକ୍କୁରଳ ସାହିତ୍ୟ ଜଗତର ଗୌରବ ଏବଂ ଭାରତୀୟ ସାହିତ୍ୟର ଭବ୍ୟଭୂଷଣ ।" ତାମିଲ୍ ପ୍ରଦେଶରେ ଏହା ପୂର୍ବରୁ ଅଥବା ଏହାର ଉପରାନ୍ତ ଏପରି ବିଦ୍ୱାତ୍‌ପୂର୍ଣ୍ଣ କଥନ ଅନ୍ୟ କେହି ପ୍ରସ୍ତୁତ କରି ନାହାନ୍ତି । ଚାର୍ଲସ ଗୋବରଙ୍କ ମତାନୁସାରେ "ତାମିଲ ସାହିତ୍ୟ ଜୀବନରେ ଏହି ଗ୍ରନ୍ଥ ଯେପରି ପ୍ରଭାବ ବିସ୍ତାର କରିଛି; ଦାନ୍ତେଙ୍କ ସାହିତ୍ୟକୃତିଦ୍ୱାରା ଇଟାଲିର ଲୋକେ ଠିକ୍ ସେପରି ପ୍ରଭାବିତ ହୋଇଥିଲେ ।"

ଡ଼କ୍ଟର ଜି.ୟୁ. ପୋପ ତିରୁକ୍କୁରଳର ଅନୁବାଦ ୧୮୮୪ ମସିହାରେ କରି ବିଶ୍ୱର ମହାନ୍ ପ୍ରତିଭାକୁ ସମସ୍ତଙ୍କ ସମକ୍ଷରେ ପରିଚିତ କରାଇଲେ । ଫ୍ରେଡ଼ରିକ ପିନ୍କାଣ୍ଟଙ୍କ ମତ- "ଭାରତରେ ଦୁଇଟି ଗ୍ରନ୍ଥ ଜନତାଙ୍କ ହୃଦୟ ଓ ମସ୍ତିଷ୍କର ପୂର୍ଣ୍ଣ ନିୟନ୍ତ୍ରଣ କରିଛି । ଗୋଟିଏ ହେଲା ତୁଳସୀ ଦାସ କୃତ ରାମାୟଣ ଅନ୍ୟଟି ତିରୁବଲ୍ଲୁବର କୃତ 'କୁରଳ' । ଏଥି ମଧ୍ୟରୁ କୁରଳ ଅତ୍ୟଧିକ ପ୍ରାଚୀନ ।" ପ୍ରଫେସର ଏମ୍, ବିଶ୍ୱର ନିତସଙ୍କ ମତରେ - କୁରଳ ବିଶ୍ୱ ସାହିତ୍ୟରେ ଏକ ଅନୁପମ ରତ୍ନ । ଏହାର ବିଚାର, ଗାମ୍ଭୀର୍ଯ୍ୟ, ଭାବର ଶାଳୀନତା ତଥା ଅନ୍ତର୍ନିହିତ ନୈତିକତା ମାନବ ସମାଜର ଅନୁକରଣୀୟ । କବିଙ୍କ ଅମର କିର୍ତ୍ତି ତାମିଲ୍ ସାହିତ୍ୟକୁ ଯଶସ୍ୱୀ କରିଛି । ଏହି କୃତିର ଅଦ୍ଭୁତ ସୌନ୍ଦର୍ଯ୍ୟ ଓ ଗହନ ବିଚାର କାରଣରୁ କେତେକ ଏହାକୁ ତାମିଲ ମରୈ (ତାମିଲ ବେଦ) ବୋଲି ଅଭିହିତ କରନ୍ତି । ଏହିଭଳି ଏକ ମହାନ୍ କବି ଜାତି, ସମାଜ ଓ ରାଷ୍ଟ୍ରର ସୀମା ଲଂଘନ କରି ମାନବର ହୃଦୟକୁ ସ୍ପର୍ଶ କରିଛନ୍ତି । ଏହାଙ୍କ କଥନକୁ ଯୁଗ ପରିବର୍ତ୍ତନ ମଧ୍ୟ ପ୍ରଭାବିତ କରିବାକୁ ଅସମର୍ଥ, ପ୍ରବଳ କାଳ ଅଭିଭୂତ ହୋଇ ନତ ମସ୍ତକ ହୋଇଯାଇଛି । ତାଙ୍କ ଅମର କୃତି ତାମିଲ ସାହିତ୍ୟ କାହିଁକି ପ୍ରତ୍ୟେକ ମାନବ ମାତ୍ରର କଲ୍ୟାଣ ନିମିତ୍ତ ଉଦ୍ଦିଷ୍ଟ । ତେଣୁ ତାଙ୍କ ଗ୍ରନ୍ଥ ପରିଚୟ ଏ ଯୁଗ ନିମିତ୍ତ ଅନିବାର୍ଯ୍ୟ ଆବଶ୍ୟକତା ରହିଛି ।"

'ତିରୁବଲ୍ଲୁବର' ନାମରେ 'ତିରୁ' ଏକ ଆଦର ପୂର୍ବକ ଉପସର୍ଗ । ଏହାର ନାମହିଁ ବଲ୍ଲୁବର । ତାଙ୍କର ବାସ୍ତବିକ ନାମ ଏବେ ମଧ୍ୟ ଅଜ୍ଞାତ । ବଲ୍ଲୁବର ଏକ ସାମାନ୍ୟ ସ୍ତର ନାମ ରୂପରେ ଲୋକ ପ୍ରଚଳିତ ଶବ୍ଦ । ଡ଼କ୍ଟର ଶଙ୍କର ରାଜୁ ନାଇଡୁ କବି ଓ ତାଙ୍କ ରଚିତ ଗ୍ରନ୍ଥ ଶୀର୍ଷକ ପୁସ୍ତକରେ ଉଲ୍ଲେଖ କରିଛନ୍ତି ।

| ଗ୍ରନ୍ଥ ନାମ | ଲେଖକଙ୍କ ନାମ |
|---|---|
| ତିରୁକ୍କୁରଳ | ତିରୁବଲ୍ଲୁବର |
| ମୁପ୍ପାନୂଲ | ନାୟନାର |
| ଉତ୍ତର ବେଦମ୍ | ଦେବର |
| ଦେୟ ବନୂଲ | ମୁଦର୍ପାବଲର |
| ତିରୁବଲ୍ଲୁବର | ଦେୟବପ୍ପୁଲବର |
| ପେୟାମୋଛି | ନାନ୍ମୁହନାର |

ବାୟୁରୈବାଛରୁ　　ମାତାନୁବଂଶୀ
ତାମିଲ୍ ମରେ　　ଚିନ୍ନାସ୍ୱୋଦାର
ପୋଦୁ ମରେ　　ପେରୁନାବଲର

## ଜନଶ୍ରୁତି ଦ୍ୱାରା ଆଚ୍ଛାଦିତ ଜୀବନ ପରିଚୟ :

ତାମିଲ ପ୍ରଦେଶରେ ତିରୁବଲ୍ଲୁବରଙ୍କ ସମ୍ବନ୍ଧରେ ଅନେକ ଜନଶ୍ରୁତି ପ୍ରଚଳିତ ଅଛି । ପୋପୋଲେ କେତେକ ଦନ୍ତକଥା ବିଷୟରେ ଉଲ୍ଲେଖ କରିଛନ୍ତି । ଯାହା ଅନୁସାରେ ବଲ୍ଲୁବର ମହିଳାପୁର ଗ୍ରାମରେ ଜାତିରେ ଏକ ମୋଚି ଥିଲେ । ସେହି ନାମରେ ସମ୍ଭବତଃ ସମସ୍ତଙ୍କ ପାଖରେ ସେ ପରିଚିତ ଥିଲେ । ପ୍ରାୟତଃ ସବୁ ଲେଖକ ସ୍ୱୀକାର କରିଛନ୍ତି ତିରୁବଲ୍ଲୁବରଙ୍କ ଜାତି ନିମ୍ନ ଶ୍ରେଣୀର ଏବଂ ସେ ଥିଲେ ସମାଜରେ ନିମ୍ନ ଜାତିର ବ୍ୟକ୍ତି । 'ବିଲ୍ଲୁବନ' ନାମକ ଏକ ଜାତି ଏବେ ମଧ୍ୟ ବିଦ୍ୟମାନ । ଏହାର ଅବଶେଷ ଚିହ୍ନ ତାମିଲ୍ ପ୍ରଦେଶରେ ଦୃଷ୍ଟି ଗୋଚର ହେଉଛି । ଏହା ସମ୍ଭବ ହେଉଛି ବଲ୍ଲୁବାକୁଡ଼ୀ ନାମକ ଯେଉଁ ଜାତି ବର୍ତ୍ତମାନ ଅଛନ୍ତି, ସେ ଜାତିର କାର୍ଯ୍ୟ ହେଉଛି ରାଜାଜ୍ଞାକୁ ଢୋଲ ଇତ୍ୟାଦି ବଜାଇ ନଗର ଓ ଜନପଦରେ ଘୋଷଣା କରିବା ।

ପରମ୍ପରା ଅନୁସାରେ ବିଶ୍ୱାସ କରାଯାଏ ଯେ, ତିରୁବଲ୍ଲୁବର ଏକ ବ୍ରାହ୍ମଣ ପୁରୁଷ (ଭଗବନ୍) ଏବଂ ଏକ ନିମ୍ନ ଜାତିର ସ୍ତ୍ରୀ (ଆଦି) ମିଳନର ସନ୍ତାନ ଥିଲେ । ଏହି ସମ୍ବନ୍ଧରେ ସାତୋଟି ସନ୍ତାନର ଉଲ୍ଲେଖ ଅଛି । ଏପରି କଥନରେ ଅଂଶ ମାତ୍ର ସତ୍ୟତା ନାହିଁ, କିମ୍ବା ଏହାକୁ ସ୍ୱୀକାର କରିବା ପାଇଁ କୌଣସି ଆଧାର ମଧ୍ୟ ଉପଲବ୍ଧ ହେଉନାହିଁ । କବିଙ୍କ ପ୍ରସିଦ୍ଧିର ଉପରାନ୍ତ ତାଙ୍କୁ ଉଚ୍ଚ କୁଳ ସହିତ ସମ୍ବନ୍ଧର ନିର୍ମାଣ ସମ୍ଭବତଃ କରାଯାଇଛି । ପ୍ରଫେସର ରଙ୍ଗାଚାର୍ଯ୍ୟ ମତ ପ୍ରଦାନ କରନ୍ତି- ତାମିଲ 'ବଲ୍ଲୁବର' ସଂସ୍କୃତ ସାହିତ୍ୟରେ 'ରାଜନୟ'ଙ୍କ ପରି ସମାନ ଅଟନ୍ତି ଏବଂ ତାଙ୍କ ଗ୍ରନ୍ଥରେ ଯେପରି ବ୍ୟାବହାରିକ ଓ ରାଜନୈତିକ ଜ୍ଞାନର ପରିଚୟ କବି ପ୍ରଦାନ କରିଛନ୍ତି, ତାହାଦ୍ୱାରା ତାମିଲ୍ ସାହିତ୍ୟର ପୁଷ୍ଟିସାଧନ ହୋଇଛି । ତେଣୁ ସେ ନିଶ୍ଚିନ୍ତ ରାଜ୍ୟର ଜଣେ ବଡ଼ ଅଧିକାରୀ ଥିଲେ । ଯେପରି କୌଟିଲ୍ୟ ନିଜର ଅର୍ଥଶାସ୍ତ୍ର ରଚନା 'ନରେନ୍ଦ୍ର' ଅଥବା 'ଚନ୍ଦ୍ରଗୁପ୍ତ'ଙ୍କ ନିମିତ୍ତ କରିଥିଲେ । ସେପରି ବଲ୍ଲୁବର ନିଜର ମିତ୍ର 'ଏଲ୍ଲାଳ' ଅଥବା ତାଙ୍କ ପୁତ୍ରଙ୍କ ନିମିତ୍ତ ଏହି କାବ୍ୟ ରଚନା କରିଥିଲେ । ଏହି ତର୍କ ବିକଶିତ ହୋଇ ପୁନଶ୍ଚ କୁହାଯାଇଛି ଯେ ଯେଉଁ ପ୍ରକାର କୌଟିଲ୍ୟଙ୍କୁ ରାଜ୍ୟର ସଂରକ୍ଷକ ଭାବେ ନିଯୁକ୍ତ କରାଯାଇଥିଲା ସେହିପରି ବଲ୍ଲୁବରଙ୍କୁ ରାଜ୍ୟର ଉଚ୍ଚ ପଦାଧିକାରୀ ଭାବେ ସମ୍ମାନିତ କରାଯାଇଥିଲା । ଏଠାରେ ସମ୍ଭାବନାର ପ୍ରଶ୍ନ

ଉଠୁନାହିଁ, ଉପଯୁକ୍ତ ପ୍ରମାଣର ଅଭାବ ରହିଛି । ବିଶ୍ଳେଷଣ କରାଗଲେ, ଏ ପ୍ରକାର ଧାରଣାର କୌଣସି ଆଧାର ମଧ୍ୟ ଉପଲବ୍ଧ ହୁଏ ନାହିଁ । ଯାହା ଆନୁମାନିକ ଭାବେ ଏହି ଉକ୍ତି ଉପସ୍ଥାପନା କରାଯାଇଛି । ଐତିହାସିକ ଦୃଷ୍ଟି କୋଣରୁ ନ ହେଲେବି, ଜନଶ୍ରୁତିର ଆଧାର ବିକଶିତ ହୋଇ ଅର୍ଥଯୁକ୍ତ ହୋଇଛି । ଏହା ଯେତେ ସୂକ୍ଷ୍ମ ଅଥବା ଶୂନ୍ୟ ହେଉ ପଛେ ବଲ୍ଲୁବର ସମ୍ବନ୍ଧିତ ଜନଶ୍ରୁତିରେ କୌଣସି ନା କୌଣସି ସାରତ୍ୱ ରହିଛି ।

ଡ଼କ୍ଟର ଓମ୍‌ପ୍ରକାଶ କବି ତିରୁବଲ୍ଲୁବରଙ୍କୁ 'ବଲ୍ଲୁବା' ଜାତିରେ ଜନ୍ମଲାଭ କରିଥିବାର ସ୍ୱୀକାର କରିଛନ୍ତି । ତାଙ୍କର ତର୍କ ଏହା ଯେ ସମ୍ଭବତଃ ପ୍ରାରମ୍ଭରେ ତାଙ୍କ ସମକାଳୀନ ଲୋକେ ଜାତି ନାମରେ ଡ଼ାକୁଥିବେ । ସମୟାନୁସାରେ ସେହି ନାମର ଆଦର ବଢ଼ିଛି, ପରେ ଶ୍ରଦ୍ଧାରେ 'ତିରୁ ' ଉପସର୍ଗ ସେହି ନାମରେ ସଂଯୁକ୍ତ କରିଦେଇଛନ୍ତି । ପୁନଶ୍ଚ ରବିନ୍‌ସନ୍ ଅନ୍ୟ ଏକ ଜନଶ୍ରୁତି ଆଧାର ଉପରେ ଉଲ୍ଲେଖ କରିଛନ୍ତି – "ମୟିଲାପୁର ଶିବ ମନ୍ଦିର ନିକଟରେ ଏକ ନବଜାତ ଶିଶୁ ପଡ଼ିଥିଲା । ବୈଲାଲ ବଂଶର ଜଣେ ସ୍ତ୍ରୀ ପୁତ୍ର ପ୍ରାପ୍ତି କାମନା କରି ଶିବ ଦର୍ଶନ କରିବାକୁ ଆସିଥିଲା । ସେ ଏ ପୁତ୍ରକୁ ଗୃହକୁ ନେଇ ନିଜ ସନ୍ତାନ ଭାବେ ଲାଳନ ପାଳନ କଲା । ତାକୁ ଯେତେବେଳେ ପାଞ୍ଚ ବର୍ଷ ବୟସ ହେଲା, ବାପା ମାଆ ତା ବିଷୟରେ ଆଲୋଚନା କରୁଥିବାର ଶୁଣିଲା । ସେ ଗ୍ରାମର ଶେଷ ମୁଣ୍ଡରେ ଥିବା ଗୋଟିଏ ପିଉଳ ଗଛ ମୂଳରେ ଆସି ରହିବାକୁ ଲାଗିଲା । ତାର ପାଦ ଯେଉଁ ପଟକୁ ରହୁଥିଲା, ବୃକ୍ଷର ଛାୟା ସେହି ଦିଗରେ ହିଁ ରହୁଥିଲା । ଏ ଘଟଣାରେ ଲୋକେ ଆଶ୍ଚର୍ଯ୍ୟ ହୋଇ ଭାବିଲେ, ଏ ବାଳକ କୌଣସି ସାମାନ୍ୟ ମଣିଷ ନୁହେଁ, କୌଣସି ଋଷି କିମ୍ବା ଦେବତା ମଣିଷ ରୂପ ଧାରଣ କରିଛି । କ୍ରମେ ବେଶି ଲୋକ ତା' ନିକଟରେ ଜମା ହେବାରୁ ସେ ବୃକ୍ଷ ମୂଳ ପରିତ୍ୟାଗ କରି ପର୍ବତ ଉପରକୁ ଚାଲିଗଲା, ଯେଉଁଠାରେ କି ତିରୁମୂଳର ତଥା ଜ୍ଞାନୀ ନିବାସ କରୁଥିଲେ ।

ଦନ୍ତ କଥାନୁସାରେ ତିରୁବଲ୍ଲୁବରଙ୍କ ଗୃହସ୍ଥ ଜୀବନ ବିଷୟରେ ଜଣାଯାଏ ଯେ ତାଙ୍କ ପତ୍ନୀଙ୍କ ନାମ ବାସୁକୀ ଥିଲା । ତାଙ୍କ ମୃତ୍ୟୁ ପତ୍ନୀଙ୍କ ଜୀବନ କାଳ ମଧ୍ୟରେ ହିଁ ଘଟିଥିଲା । ତାଙ୍କର ପତିବ୍ରତା ଧର୍ମ ଓ କର୍ତ୍ତବ୍ୟ ନିଷ୍ଠା ପାଇଁ ସେ ତାମିଲ୍ ପ୍ରଦେଶରେ ବିଖ୍ୟାତ ଥିଲେ । ନିଜ ଗୃହସ୍ଥ ଜୀବନର ଘଟଣାକୁ ନିଜ କାବ୍ୟରେ ଆଦର୍ଶ ଗୃହସ୍ଥ ଜୀବନ ସମ୍ବନ୍ଧରେ ସବିଶେଷ ଉପସ୍ଥାପନା କରିଥିବାର ଅନୁମାନ କରାଯାଏ ।

# କାବ୍ୟ ରଚନା କାଳ

ତିରୁବଲ୍ଲୁବରଙ୍କ ରଚନା କାଳ ବିଷୟରେ ନିର୍ଣ୍ଣୟ କରିବା ଅତ୍ୟନ୍ତ ଦୁଷ୍କର । ଐତିହାସିକ ପ୍ରମାଣର ଯେ ଅଭାବ ରହିଛି, ଏହା ନିଃସନ୍ଦେହ । ଏଣୁ ଏ ଦିଗରେ ସାକ୍ଷୀ ବିଶେଷ ସହାୟକ ନୁହେଁ । ଏ ସମ୍ବନ୍ଧରେ ନିମ୍ନଲିଖିତ କେତେକ ମତ ପ୍ରଣିଧାନ ଯୋଗ୍ୟ ।

ରେବରେଣ୍ଡ ଯୁ ପୋପ୍‌ଙ୍କ ମତାନୁସାରେ-ତିରୁବଲ୍ଲୁବରଙ୍କ ଜନ୍ମ ଓ ରଚନା କାଳ ଅଷ୍ଟମ ଓ ଦଶମ ଶତାବ୍ଦୀ ମଧ୍ୟରେ । ଏହି ଆଧାର ଉପରେ କବିଙ୍କ ଈସାଇ ଧର୍ମର ପ୍ରଭାବ ପଡ଼ିଥିଲା ବୋଲି ସେ କହନ୍ତି ।ଏହି ମତକୁ ବହୁ ବିଦ୍ୱାନ୍ ସ୍ୱୀକାର ନ କରି ଖଣ୍ଡନ କରିଛନ୍ତି ।

ନୀଳକଣ୍ଠ ଶାସ୍ତ୍ରୀ, ବୈୟାପୁରୀ ପିଲ୍ଲେ, ଜୈସୁଦାସନ୍, ପ୍ରଭୃତି ବିଦ୍ୱାନ୍ କହନ୍ତି- ଏହି ଗ୍ରନ୍ଥର ରଚନା କାଳ ପଞ୍ଚମ କିମ୍ବା ଷଷ୍ଠ ଶତାବ୍ଦୀ ମଧ୍ୟରେ ହୋଇଥାଇ ପାରେ । ତିରୁକ୍କୁରଳ ଗ୍ରନ୍ଥ ଉପରେ ସଂସ୍କୃତ ସାହିତ୍ୟର ଯଥେଷ୍ଟ ପ୍ରଭାବ ପଡ଼ିଛି । ବିଦ୍ୱାନ ମାନଙ୍କ ନିଷ୍କର୍ଷ ଏହି ଯେ ଏହି ଗ୍ରନ୍ଥରେ ଅପେକ୍ଷାକୃତ ଅଧିକ ପ୍ରତିଶତ ସଂସ୍କୃତ ଶବ୍ଦ ବ୍ୟବହାର କରାଯାଇଛି । ସଂସ୍କୃତ ଆର୍ଷ ଗ୍ରନ୍ଥର ରଚନା କାଳର ଅନ୍ତିମ ରୂପ ମଧ ନିଶ୍ଚିନ୍ତ ହୋଇନାହିଁ । ତେଣୁ ଏହାର ମତଭେଦ ଦେଖାଯାଏ ।

ପୁନଶ୍ଚ କେତେକ ବିଦ୍ୱାନ ଏ ଗ୍ରନ୍ଥର ରଚନାକାଳ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀରେ ହୋଇଛି ବୋଲି ମତ ଦିଅନ୍ତି । ରାମଚନ୍ଦ୍ର ଦୀକ୍ଷିତ କହନ୍ତି-"ଏହି ଗ୍ରନ୍ଥ ଖ୍ରୀ.ପୂ ପ୍ରଥମ ଶତାବ୍ଦୀ ବୋଲି କହନ୍ତି । କାରଣ ପଞ୍ଚତନ୍ତ୍ର, ହିତୋପଦେଶ, କାମଲକୀୟ ନୀତିସାର ଭର୍ତ୍ତୃହରି ଇତ୍ୟାଦି ଦ୍ୱାରା ରଚିତ ଗ୍ରନ୍ଥଗୁଡ଼ିକର କେତେକ ସାମ୍ୟ ତିରୁକ୍କୁରଳ ଗ୍ରନ୍ଥରେ ଉପଲବ୍ଧ ।

ଏହି ବିଷୟ ଉପରେ ଅନ୍ୟ କେତେକ ସାକ୍ଷ୍ୟ ବିଚାର ଯୋଗ୍ୟ । 'ମଣିମେଖଳା' ନାମକ ଅନ୍ୟ ଏକ ତାମିଲ ମହାକାବ୍ୟ ତିରୁବଲ୍ଲୁବରଙ୍କୁ ଜଣେ ଉଚ୍ଚାଙ୍ଗ ମହାକବି ଭାବେ ଦର୍ଶାଇଛି । ଏହି ପ୍ରକାର 'ଶିଳପ୍ପଦି କାରମ୍' ମହାକାବ୍ୟ ମଧ 'କୁରଳ' ଧର୍ମ ବିଷୟରେ ଉଲ୍ଲେଖ କରିଛି । କଥିତ ଦୁଇଟି ମହାକାବ୍ୟ ମଧ୍ୟ ଚତୁର୍ଥ ଓ ଅଷ୍ଟମ ଶତାବ୍ଦୀ ମଧ୍ୟରେ ରଚିତ ହୋଇଛି ବୋଲି ପ୍ରମାଣ ମିଳେ ।

କୁରଳ ସମ୍ବନ୍ଧରେ ବିଭିନ୍ନ ସ୍ରୋତଦ୍ୱାରା ପ୍ରାପ୍ତ ସାମଗ୍ରୀକୁ ଅଧ୍ୟୟନ କରି ନିଶ୍ଚିତ ସଙ୍କେତ ଉପଲବ୍ଧ ହୁଏ ଯେ ପ୍ରାଚୀନ ସଂସ୍କୃତ ଗ୍ରନ୍ଥ ଯଥା- ମନୁସ୍ମୃତି, କୌଟିଲ୍ୟ ଅର୍ଥଶାସ୍ତ୍ର, କାମନ୍ଦକୀୟ ନୀତିସାର, କାମସୂତ୍ର ଇତ୍ୟାଦି ସମ୍ବନ୍ଧରେ ବଲ୍ଲୁବର ବେଶ୍ ପରିଚିତ ଥିଲେ । ତେଣୁ ଏହି ଆଧାର ଉପରେ ନିଷ୍କର୍ଷ ମିଳେ ଯେ ବଲ୍ଲୁବରଙ୍କ ରଚନା କାଳ ଦ୍ୱିତୀୟ ଶତାବ୍ଦୀରେ ପ୍ରାୟ ହୋଇପାରେ । କାରଣ ଖ୍ରୀ.ପୂ. ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀ ମଧ୍ୟରେ ମନୁସ୍ମୃତି, ଖ୍ରୀ.ପୂ. ଦ୍ୱିତୀୟ ଓ ତୃତୀୟ ଶତାବ୍ଦୀ ମଧ୍ୟରେ କୌଟିଲ୍ୟ ଅର୍ଥଶାସ୍ତ୍ର ରଚନା ହୋଇଥିବାର ପ୍ରମାଣ ମିଳେ । ଏତଦ୍ ଅତିରିକ୍ତ ସଂସ୍କୃତ ରଚନା ସଦୃଶ ସୂତ୍ର ଶୈଳୀ, ବେମ୍ବା ଛନ୍ଦର ପ୍ରୟୋଗ ଏବଂ ସାହିତ୍ୟ ସାମଗ୍ରୀ ଏହି ଗ୍ରନ୍ଥର ପ୍ରାଚୀନତା ବିଷୟରେ ଇଂଗିତ କରେ ।

'ତିରୁବଲ୍ଲୁବରମାଲୈ' ନାମକ ଏକ କୃତି ତିରୁକ୍କୁରଳ ଗ୍ରନ୍ଥର ପ୍ରଶସ୍ତି ଗାନ କରିଛି । ବହୁ ପ୍ରତିଷ୍ଠାବାନ୍ କବି ସମ୍ଭବତଃ ବଲ୍ଲୁବରଙ୍କ ଅସୀମ ପ୍ରଶଂସା ଭାବନାରେ ପ୍ରେରିତ ହୋଇ 'ସଂଘମ୍ ସାହିତ୍ୟ'ର ଅଭିବୃଦ୍ଧି ନିମିତ୍ତ ଏଭଳି ଏକ କୃତିର ପ୍ରଶଂସା କରିଛନ୍ତି । ମହାକାବ୍ୟର ରଚନା କାଳକ୍ରମ ଦୃଷ୍ଟିରୁ କୌଣସି ବିବେଚନା କରାଯିବାର ପ୍ରୟାସ ହୋଇ ନାହିଁ ।

## ଭାରତୀୟ ଓ ବିଦେଶୀ ଭାଷାରେ କାବ୍ୟର ଅନୁବାଦ :

'ତିରୁକ୍କୁରଳ' ମହାକାବ୍ୟ ଭାରତୀୟ ତଥା ବିଦେଶୀ ଭାଷାରେ ଅନେକାନକ ଅନୁବାଦ ହୋଇଛି । ୧୯୨୪ ମସିହାରେ କ୍ଷେମାନନ୍ଦ ରାଉତ ହିନ୍ଦୀ ଭାଷାରେ ଅନୁବାଦ କରିଛନ୍ତି । ୧୯୫୮ ମସିହାରେ ଡ଼କ୍ଟର ସୁ ଶଙ୍କର ରାଜୁ ନାଇଡୁଙ୍କ ଦ୍ୱାରା ଏକ ଶ୍ରେଷ୍ଠ କୋଟିର ଅନୁବାଦ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ ହୋଇଛି । ଏତଦ୍ ଅତିରିକ୍ତ ଶ୍ରୀମତୀ ରାଜମ୍ ପିଲ୍ଲୈ ୧୯୭୫ ମସିହାରେ ଏକ ଅନୁବାଦ କରି ପ୍ରକାଶିତ କରିଛନ୍ତି । ଡ଼. ନା. ମହାଲିଙ୍ଗମ୍ ଏବଂ ସୁ.ଖ. ଭେଙ୍କଟ କୃଷ୍ଣନ୍‌ଙ୍କ ଦ୍ୱାରା ୧୯୮୮ ମସିହାରେ ଅନୁବାଦ ମଧ୍ୟ ପ୍ରକାଶିତ ହୋଇଥିଲା । ଏ ଗ୍ରନ୍ଥର ହିନ୍ଦୀ ଅନୁବାଦ କରି ପ୍ରଚାର ଓ ପ୍ରସାର ନିମିତ୍ତ ଏକ ବ୍ୟବସାୟୀ ସଂସ୍ଥାନଦ୍ୱାରା ମଧ୍ୟ ପ୍ରୟାସ ହୋଇଛି ।

ଏତଦ୍ ବ୍ୟତୀତ ସଂସ୍କୃତ, ତେଲ୍‌ଗୁ, ମଲୟାଲମ୍ ବଙ୍ଗଳା, ମରାଠୀ, ଉର୍ଦ୍ଦୁ, ଇଂରେଜୀ, ଜର୍ମାନ୍, ଫ୍ରେଞ୍ଚ୍, ଡ଼ଚ୍, ସିଂହଳୀ ଇତ୍ୟାଦି ଭାଷାରେ ଅନୁବାଦଗୁଡ଼ିକ ପ୍ରକାଶିତ ହୋଇଛି । ଏହି ମହାକାବ୍ୟର ସଂଶୋଧନ କାର୍ଯ୍ୟ ୧୯୭୧ ମସିହାରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟଦ୍ୱାରା ସମାହିତ ହୋଇଛି । ପୁନଶ୍ଚ ୧୯୭୨ ମସିହାରେ ତିରୁବଲ୍ଲୁବର ଏବଂ କବୀରଙ୍କ ମଧ୍ୟରେ ତୁଳନାତ୍ମକ ଅଧ୍ୟୟନ ଶୀର୍ଷକ ପୁସ୍ତକ ମଧ୍ୟ ଡ଼. ଓଁ ପ୍ରକାଶଙ୍କ ପ୍ରେରଣାଦ୍ୱାରା ରଚନା କରାଯାଇଛି ।

## ବର୍ଣ୍ଣ୍ୟ ବିଷୟ

ତିରୁକୁରଳ ଏକ ମୁକ୍ତକ କାବ୍ୟ । ଏହାର ପ୍ରତ୍ୟେକ ପଦ ସ୍ୱତନ୍ତ୍ର ରୂପରେ ପୂର୍ଣ୍ଣ ଅର୍ଥର ଦ୍ୟୋତକ । ପୁନଶ୍ଚ ବିଷୟ ଦୃଷ୍ଟି କୋଣରୁ ଏହି ଗ୍ରନ୍ଥରେ ନିରନ୍ତର କ୍ରମବଦ୍ଧତା ଏବଂ ଧାରାବାହିକତା ବିଦ୍ୟମାନ । 'କୁରଳ'ର ଅର୍ଥ 'ଲଘୁ' । କୁରଳ ବେମ୍ବା ନାମକ ଏକ ଲଘୁ ଛନ୍ଦରେ ଦୁଇଟି ପାଦ ଅଛି । ଯେଉଁଥିରେ ପ୍ରଥମ ପାଦରେ ଚାରୋଟି ପଦ ଏବଂ ଦ୍ୱିତୀୟ ପାଦରେ ଦୁଇଟି ପଦ ଅଛି । ଯେଉଁଥିରେ ପ୍ରଥମ ପାଦରେ ଚାରୋଟି ପଦ ଓ ଦ୍ୱିତୀୟ ପାଦରେ ତିନୋଟି ପଦ ଅଛି । ଏହାର ରଚନା ପର୍ଯ୍ୟାପ୍ତ ଜଟିଳ । ପ୍ରତ୍ୟେକ 'କୁରଳ'ରେ ଦୋହା ପରି ଏକ ଭାବରେ ବିଶେଷ ପୂର୍ଣ୍ଣ ରୂପରେ ସମାହିତ ହୋଇଛି । ପ୍ରତ୍ୟେକ ପଦ ପୂର୍ବ ପଦ ସହିତ ଏବଂ ପ୍ରତ୍ୟେକ ଅଧ୍ୟାୟ ପୂର୍ବ ଅଧ୍ୟାୟ ସହିତ ଅତ୍ୟନ୍ତ ସୂକ୍ଷ୍ମ ରୂପରେ ସମ୍ପୃକ୍ତ ହୋଇଛି । ଗ୍ରନ୍ଥଟି ମୁଖ୍ୟତଃ ତିନୋଟି ଭାଗରେ ବିଭକ୍ତ ହୋଇଛି- ଧର୍ମ (ଅରମ) ଅର୍ଥ (ପୋରୁଲ), କାମ (ଇନ୍‌ବମ୍) ।

ଧର୍ମଖଣ୍ଡ (ଅରଭୁପ୍ୟାଲ୍) ଅନ୍ତର୍ଗତ ସର୍ବେଶ ବନ୍ଦନା, ବର୍ଷା ବୈଶିଷ୍ଟ୍ୟ, ସନ୍ନ୍ୟାସୀଙ୍କ ମହତ୍ତ୍ୱ ଏବଂ ଧର୍ମ ଶକ୍ତି ବର୍ଣ୍ଣନର ଉପରାନ୍ତ ବିଂଶ ଅଧ୍ୟାୟରେ ଗୃହସ୍ଥର ଧର୍ମ (ଇଲ୍ଲର ବିୟଲ) ପ୍ରତିପାଦନ ହୋଇଛି । ସେଥିରେ ଗୃହସ୍ଥ ପତ୍ନୀର ଗୁଣ, ସନ୍ତତି, ସ୍ନେହ, ସଂପନ୍ନତା, ଆତିଥ୍ୟ, ମଧୁର ଭାଷଣ, କୃତଜ୍ଞତା, ସଂଯମ, ସଦାଚାର, ପରସ୍ତ୍ରୀ ବର୍ଜ୍ଜନ, ସହନଶୀଳତା, ଈର୍ଷା ବର୍ଜନ, ନିର୍ଲୋଭ, ପରଛିଦ୍ର, ବ୍ୟର୍ଥ ଅପ୍ରଳାପ, ଶିଷ୍ଟାଚାର, ଦାନ ଯଶାଦି ବିଷୟରେ ବିବେଚନା କରାଯାଇଛି । ଧର୍ମଖଣ୍ଡର ଅନ୍ୟ ଅଂଶରେ ସନ୍ନ୍ୟାସୀ ଧର୍ମ (ତରୁବର ବିୟଲ) ର ଅନ୍ତର୍ଗତ ଦୟାଳୁତା, ମାଂସାହାର

ନିଷେଧ, ତପସ୍ୟା, ଦୁରାଚରଣ, ଅଚୌର୍ଯ୍ୟ, ସତ୍ୟଭାଷଣ, ଅକ୍ରୋଧ, ଅହିତ ବର୍ଜନ, ଅହିଂସା, ସ୍ଥିରତା, ତତ୍ତ୍ୱଜ୍ଞାନ, ତୃଷ୍ଣାଦମନ ଇତ୍ୟାଦି ବିଷୟରେ ବିସ୍ତୃତ ବିବେଚନ କରାହୋଇଛି । ଏ ସମସ୍ତ ଯଦିଓ ସନ୍ନ୍ୟାସୀ ଧର୍ମର ଅନ୍ତର୍ଗତ, ତଥାପି ଧର୍ମର ଅଂଶ ଦୃଷ୍ଟି କୋଣରୁ ପ୍ରତ୍ୟେକ ମାନବ ମାତ୍ର ନିମିତ୍ତ ଉଦ୍ଦିଷ୍ଟ । ସନ୍ନ୍ୟାସ ଓ ଗୃହସ୍ଥର ବର୍ଗୀକରଣ କୌଣସି ସୂକ୍ଷ୍ମ ସିଦ୍ଧାନ୍ତ ଉପରେ ଆଶ୍ରିତ ନ ହୋଇ ସତ୍‌ଦ୍ୱାରା ପ୍ରତିଷ୍ଠିତ ହୋଇଛି । ଏହି ଖଣ୍ଡର ଗୋଟିଏ ଅଧ୍ୟାୟରେ ଭାଗ୍ୟ (ଉଚ୍ଛ) ବିଷୟରେ ସୂଚନା ଦିଆଯାଇଛି, ଯାହାକି କର୍ମଫଳଦ୍ୱାରା ନିର୍ଦ୍ଧାରିତ ଅଟେ ।

କାବ୍ୟର ଦ୍ୱିତୀୟ ଭାଗ ଅର୍ଥ (ପୋରୁଳ)ର ଅନ୍ତର୍ଗତ ଶାସନ ବିଧାନ, ରାଜାଙ୍କ ଗୁଣ କର୍ମ, ଶିକ୍ଷା, ଅଶିକ୍ଷା, ଶ୍ରବଣ, ବୁଦ୍ଧିମତା, ଶକ୍ତି, ସମୟ, ସ୍ଥଳ ବୋଧ, ବିଚାରପୂର୍ଣ୍ଣ ନିର୍ଣ୍ଣୟ, ସୁଶାସନ, ଗୁପ୍ତଚର, ସାଧ୍ୟ ସଂବନ୍ଧୀୟ ଅନେକାନେକ କର୍ତ୍ତବ୍ୟ ଓ ସିଦ୍ଧାନ୍ତର ବିବେଚନ କରାଯାଇଛି । ସାମାଜିକ ଦୁଷ୍କୃତି ଭାବରେ ମଦ୍ୟ, ବେଶ୍ୟା, ଜୁଆ ସମ୍ବନ୍ଧରେ ଉଲ୍ଲେଖ ମଧ୍ୟ ଏହି ଭାଗରେ ହୋଇଅଛି । ଏତଦ୍‌ଭିନ୍ନ ଶାସନ ବିଧାନ (ଅରଡ଼ିଅଲ୍) ଦୁର୍ଗ (ଅରଣୟଲ) ଖାଦ୍ୟ କୂଳିୟନ୍) ସୈନ୍ୟ (ପଟୈୟିୟଲ୍) ମୈତ୍ରୀ (ନଡ଼ପିୟଲ୍), ବଂଶ (କୁଟିୟିୟଲ୍) ଇତ୍ୟାଦି ସାତୋଟି ଖଣ୍ଡରେ ବିଭକ୍ତ କରାଯାଇଛି । ମୈତ୍ରୀ ସ୍ଥାପନ ପାଇଁ ସ୍ତ୍ରୀ ଲୋକଙ୍କ ଅନୁସରଣକୁ ନିଷିଦ୍ଧ କରାଯାଇଛି । କାରଣ ଏଥିରେ ବେଶ୍ୟା ଓ ଔଷଧି ଇତ୍ୟାଦିର ସମାବେଶ ହୋଇଯାଏ । ବଂଶ ଅନ୍ତର୍ଗତ ଦରିଦ୍ର୍ୟ, ଯାଚନା, ନୀଚତା ଇତ୍ୟାଦି ସମାବିଷ୍ଟ ହୋଇଥାଏ ।

ଗ୍ରନ୍ଥର ତୃତୀୟ ଭାଗ କାମ (ଇନ୍‌ବମ୍) କୁ ଦୁଇ ଭାଗରେ ବିଭକ୍ତ କରାଯାଇଛି- ୧ ଗୁପ୍ତ ପ୍ରେମ, ୨- ପତିପ୍ରେମ । ସଙ୍କେତ ପରିଚୟ, ମିଳନସୁଖ, ପ୍ରେମର ମହିମା, ଲଜ୍ଜ୍ୟାତ୍ୟାଗ, ପ୍ରବାଦର ପରିଜ୍ଞାନ ଇତ୍ୟାଦି ଗୁପ୍ତ ପ୍ରେମ ଅଥବା ପୂର୍ବଭାଗ ବିଷୟ ଭାବେ ସୂଚିତ ହୋଇଛି । ପତି ବିୟୋଗ ପ୍ରାରମ୍ଭ ହୋଇ ବିରହ କାରଣରୁ ବେଦନାପୂର୍ଣ୍ଣ ନେତ୍ର, ସ୍ୱପ୍ନାବସ୍ଥା ଅଙ୍ଗ ସୌନ୍ଦର୍ଯ୍ୟର କ୍ଷତି, ସ୍ୱଗତ ସଂଳାପ, ମାନଭଙ୍ଗ, ସଂଭୋଗର ପ୍ରବଳ ଅଭିଳାଷ, ପତିପ୍ରେମର ଅନ୍ତର୍ଗତ ହୋଇଛି । ପ୍ରିୟ ମିଳନର ପଶ୍ଚାତ୍ ହୃଦୟ ପରବଶ ନ ହେବା, ପ୍ରଣୟ କଳହର ସୂକ୍ଷ୍ମତା ଏବଂ ଏହାର ଆନନ୍ଦ ଏହି ଭାଗରେ ଆଲୋଚିତ ହୋଇଛି । କ୍ରମିକ ବିକାଶ ଦୃଷ୍ଟିରୁ ଏହି ବିଭାଜନ ଅତ୍ୟନ୍ତ ସଫଳ ହୋଇଛି ।

ତିରୁବଲ୍ଲୁବର ଧର୍ମ, ଅର୍ଥ, କାମର ବର୍ଣ୍ଣନ ଏହି ଗ୍ରନ୍ଥରେ କରିଛନ୍ତି, କିନ୍ତୁ ମୋକ୍ଷ ବିଭାଜନରେ ନୀରବ ରହିଛନ୍ତି । କାରଣ ଏହା ସ୍ପଷ୍ଟ ଯେ, ଧର୍ମଯୁକ୍ତ ଜୀବନ ଉପରାନ୍ତ ମୋକ୍ଷ ଏକ ସ୍ୱାଭାବିକ ପରିଣାମ । ଏଠାରେ ଜୀବନରେ ଭାବାତ୍ମକ ସମ୍ବନ୍ଧ, ଗୃହସ୍ଥର ପରିସୀମାରେ ଆବଦ୍ଧ ରହେ, ତେଣୁ ଗୃହସ୍ଥ ଧର୍ମର ବିବେଚନ ବିସ୍ତାର ପୂର୍ବକ କରାଯାଇଛି । ଅର୍ଥ ଅନ୍ତର୍ଗତ ରାଜ୍ୟ ସଂଗଠନର ବିସ୍ତୃତ ବିଶ୍ଳେଷଣ କରି ମାନବ ମାତ୍ରକେ କଲ୍ୟାଣ ଭାବନାରାଜ୍ୟକୁ ପ୍ରେରିତ କରାଯାଇଛି । ସମ୍ଭବତଃ ଧର୍ମ ଆଧୃତ ଅର୍ଥ ଓ କାମ ସନ୍ତୁଳିତ ଆଦର୍ଶ ଜୀବନର ପରିଣତି ହେଉଛି 'ମୋକ୍ଷ' ବୋଲି ମହାକବି ପ୍ରଚ୍ଛନ୍ନ ଭାବେ ନିର୍ଦ୍ଦେଶ କରିଛନ୍ତି ।



# ଦ୍ୱିତୀୟ ଅଧ୍ୟାୟ

## ଧର୍ମ ଓ ଦର୍ଶନ ବିଷୟକ ବିଚାର :

ନ ଜାତୁ କାମାନ୍ନ ଭୟାନ୍ନ ଲୋଭ ଦମ୍ଭ ଜହ୍ଵାଜ୍ଜୀ ବିତସ୍ୟାପି ହେତୋଃ

ନିଜସ୍ୟା ଧର୍ମଃ ସୁଖ ଦୁଃଖ ଦ୍ୱନିତ୍ୱେ ଜୀବୋ ନିତ୍ୟୋ ହେତୁରସ୍ୟ ଦ୍ୱନିତ୍ୟଃ ॥

(ମହା ଉଦ୍ୟୋଗ ୪୦/୧୨)

ସୁଖ-ଦୁଃଖ ଅନିତ୍ୟ, ପରନ୍ତୁ ଧର୍ମ ନିତ୍ୟ । ଏଣୁ ସୁଖ ଇଚ୍ଛାରେ, ଭୟରେ, ଲୋଭରେ ଅଥବା ପ୍ରାଣ ସଙ୍କଟ ଆସିଲା ବେଳେ ମଧ୍ୟ ଧର୍ମକୁ କେବେହେଲେ ତ୍ୟାଗ କରିବା ଉଚିତ୍ ନୁହେଁ । ଏହି ଜୀବନିତ୍ୟ ଏବଂ ସୁଖ ଦୁଃଖାଦି ବିଷୟ ଅନିତ୍ୟ ।

କୁଟୁମ୍ବେ ତନିଭୁ ଓଟିୟପ୍ ପଲ୍ ପରନ୍ଦତ୍ରେ

ଉନୁମ୍ଭୋଡୁ ଉଇରିଡ଼୍ରେ ନଟ୍ରପୁ (କୁରଳ-୩୩୮)

ଆତ୍ମାର ଶରୀର ସହିତ ସମ୍ବନ୍ଧ ଏପରିଯେ ଯେପରି ପକ୍ଷୀ ବାହାର ହେବା ମାତ୍ରେ ପକ୍ଷୀ ଅଣ୍ଡାର ଖୋଳକୁ ତ୍ୟାଗ କରିଦିଏ ।

ମକ୍କଲ ମେୟ ତିଣ୍ଡଲ ଉଡ଼ରକିନବମ୍ ମଟରୁ ଅବର

ସୋର କ୍କେଟ୍‌ଟଲ୍ ଇନ୍‌ବମ୍ ସେବିକ୍କୁ । (କୁରଳ-୬୫)

ନିଜ ଶିଶୁର ମୃଦୁ ଅଙ୍ଗ ସ୍ପର୍ଶଦ୍ୱାରା ଶରୀର ରୋମାଞ୍ଚିତ ହୋଇଯାଏ । ତା'ର ମଧୁର ଅଧୁରା କଥା ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରେ ।

ତିରୁବଲ୍ଲୁବରଙ୍କ ଈଶ୍ୱର ତାଙ୍କ ସୃଷ୍ଟି ଓ ଜଗତ ତାର ନଶ୍ୱରତା ଏବଂ ପ୍ରାରବ୍ଧ ଓ କର୍ମ । ଧର୍ମ - ପରିବାର ଓ ସମାଜର ଏବଂ ପ୍ରେମର ମହତ୍ୱ ।

ଧର୍ମ -ବ୍ୟକ୍ତି ପରକ ହେଉଛି ରୂପ ଓ ମନ, ଆତ୍ମ ସଂଯମ, ତୃଷ୍ଣାତ୍ୟାଗ ।

ବଚନ - ସତ୍ୟ ଭାଷଣ, ମଧୁର ଭାଷଣ, ମିତ ଭାଷଣ, କର୍ମ- ଅହିଂସା ଏବଂ ମାଂସାହାର, ନିଷେଧ, ଧର୍ମ-ସମାଜଗତ ରୂପ ହେଉଛି - ଲୋକାଚାର, ସଦାଚାର, ଅପରିଗ୍ରହ, ନିନ୍ଦା ବର୍ଜନ, ଅକ୍ରୋଧ, ପରସ୍ତ୍ରୀ ବର୍ଜନ, ବାହ୍ୟାଡ଼ମ୍ବର ବିରୋଧ, ପରୋପକାର, ଅତିଥି ସତ୍କାର, ଦାନ, କୃତଜ୍ଞତା ଓ କ୍ଷମାଭାବ ଇତ୍ୟାଦି ।

## ଧର୍ମ ଓ ଦର୍ଶନ ବିଷୟକ ବିଚାର :

'ଧର୍ମ' ସମାଜରେ ବ୍ୟବହାର ଫଳସ୍ୱରୂପ ଦୁଇଟି ରୂପ ଗ୍ରହଣ କରେ

(କ) ମାନସିକ ଆଚରଣ, ପବିତ୍ରତା, ସମାଜରେ କର୍ତ୍ତବ୍ୟ କର୍ମ

(ଖ) ବାହ୍ୟ କର୍ମକାଣ୍ଡ ବିଧି ବିଧାନ ଆଦି ଧର୍ମର ପ୍ରଥମ ରୂପ ପ୍ରାୟତଃ ସାର୍ବକାଳୀନ ଏବଂ ସାର୍ବଦେଶିକ । ବଲ୍ଲୁବର ଏହି ସାର୍ବକାଳିକ ଧର୍ମ (ଅରମ୍) ସ୍ଥାପନା କରିଛନ୍ତି । ତାଙ୍କର ଧର୍ମର ସମ୍ବନ୍ଧ ମାନବ ଏବଂ ବ୍ରହ୍ମାଣ୍ଡର ସତ୍ୟଦ୍ୱାରା ପ୍ରତିଷ୍ଠିତ । ଧର୍ମ ଖଣ୍ଡର ପ୍ରସ୍ତାବନା ଭାଗରେ ଚାରୋଟି ଅଧ୍ୟାୟ ଅଛି (୧) ଈଶ୍ୱର ସ୍ତୁତି (କଡ଼ବୁଲ ବାଜ୍ତ୍ତୁ) (୨) ବର୍ଷାର ମହତ୍ତ୍ୱ (ବାନଚିରପ୍ପ) (୩) ସନ୍ନ୍ୟାସୀର ମହତ୍ତ୍ୱ(ନୀତାର ପେରୁମୈ) ୪. ଧର୍ମର ଶକ୍ତି ( ଅରନ୍'ବଲିୟୁ ଚାତ୍ତର) । ତତ୍ ପଶ୍ଚାତ୍ ମହାକବି ଗୃହସ୍ଥ ଜୀବନର ମହତ୍ତ୍ୱ ସ୍ପଷ୍ଟ କରି ସଂଯମ, ମଧୁର ଭାଷଣ, ସଦାଚରଣ, ପରୋପକାର, ଆତିଥ୍ୟ ଆଦି ବାହ୍ୟ ଅଙ୍ଗଦ୍ୱାରା କାବ୍ୟ ବିଷୟ ପୁଷ୍ଟ କରିଛନ୍ତି । ଗୃହସ୍ଥ ଜୀବନ (ପ୍ରବୃତ୍ତି ମାର୍ଗ ) ସହ ଅନେକ ବିଷୟ ଅଛି, ଯଥା – ଜୀବନସଙ୍ଗିନୀର ଗୁଣ, ସନ୍ତତି, ସ୍ନେହ ସଙ୍ଗିନତା, ପରସ୍ତ୍ରୀ ବର୍ଜନ, ଶିଷ୍ଟାଚାର, ଦାନ, ଯଶ ଆଦି । ପୁନଶ୍ଚ ସନ୍ୟାସ (ନିବୃତ୍ତି ମାର୍ଗ ) ବିଧି ନିଷେଧର ନିର୍ଦ୍ଧାରଣ ସହ ସମ୍ବନ୍ଧିତ । ଏହା ମଧ୍ୟ ଦୟା, ତପ (ତବମ୍) ସତ୍ୟଭାଷଣ (ବାୟମୈ), ଅହିଂସା (କୋଲ୍ଲାମୈ), ନଶ୍ୱରତା (ନିଲୈୟାମୈ), ତ୍ୟାଗ (ତୁରବୁ), ସତ୍ୟ ଜ୍ଞାନ (ମୈୟ୍ୟୁନର୍ତ୍ତଲ), ନିଷ୍କାମ କର୍ମ (ଅବା ଅରୁତ୍ତଲ) ଇତ୍ୟାଦି ଅନେକ ବିଷୟ ଉପରେ ବିଚାର କରାଯାଇଛି । ଏତଦ୍ ବ୍ୟତୀତ ନିଜ ଭାଗ୍ୟ ଉପରେ ମଧ୍ୟ ବିଚାର ବ୍ୟକ୍ତ କରିଛନ୍ତି । କର୍ମ ଫଳ ସିଦ୍ଧାନ୍ତକୁ ସ୍ୱୀକାର କରି ଭାଗ୍ୟର ପ୍ରବଳ ଶକ୍ତି ଏବଂ ପୂର୍ବ ଜନ୍ମର ସଞ୍ଚିତ କର୍ମ ତଥା ଏହି ଜନ୍ମର କର୍ମର ପରିଣାମ ବିବେଚନ କରିଛନ୍ତି । କବି ଦୁଇଟି ଜୀବନର ଚିତ୍ର ପ୍ରଦାନ କରିଛନ୍ତି, ଗୃହସ୍ଥ (ପ୍ରବୃତ୍ତି ମାର୍ଗ), ସନ୍ନ୍ୟାସୀ (ନିବୃତ୍ତି ମାର୍ଗର ତ୍ୟାଗୀ ପୁରୁଷ) ।

ଉଭୟଙ୍କ ତୁଳନାରେ ଗୃହସ୍ଥଙ୍କୁ ଅଧିକ ମହତ୍ତ୍ୱ ପ୍ରଦାନ କରିଛନ୍ତି ପରନ୍ତୁ ନିବୃତ୍ତି ମାର୍ଗର ପଥିକଙ୍କ ଦିଗ୍‌ଦର୍ଶନକୁ ବଲ୍ଲୁବର ବିଶେଷ ଦୃଷ୍ଟି ଆକର୍ଷଣ କରିଛନ୍ତି ।

ତିରୁକ୍କୁରଳରେ ସମଗ୍ରତଃ ୧୩୩୦ କୁରଳ ଅଛି । ଏଥିରେ ୧୩୩ଟି ଅଧ୍ୟାୟ ଏବଂ ପ୍ରତ୍ୟେକ ଅଧ୍ୟାୟରେ ୧୦ଟି ପଦ ଅଛି । ପ୍ରଥମ ୩୮ଟି ଅଧ୍ୟାୟ ଧର୍ମ(ଅରମ୍) ବିଷୟକ, ଏତଦ୍ ପଶ୍ଚାତ୍ ୭୦ଟି ଅଧ୍ୟାୟ ଅର୍ଥ ବିଷୟକ ତଥା ଶେଷ ୨୫ଟି ଅଧ୍ୟାୟ କାମ (ଇନ୍‌ବମ୍) ଅର୍ଥାତ୍ ଅନନ୍ଦ ବିଷୟକ ଅଧ୍ୟାୟ ।

## ବଲ୍ଲୁବରଙ୍କ ଇଶ୍ୱର :

ତିରୁବଲ୍ଲୁବରଙ୍କ 'ସର୍ବେଶ ସ୍ତୁତି' ନାମକ ପ୍ରଥମ ପଦରେ କୁହାଯାଇଛି । ସର୍ବ ବର୍ଣ୍ଣମାଳାର ପ୍ରଥମ ଅକ୍ଷର 'ଅ' ଅଟେ । ସବୁ ଲୋକର ମୂଳରେ 'ଆଦି ଭଗବାନ୍' ଅଟନ୍ତି (ଅହର ମୁଦଲ ଏଁଚୁତେଲାମ୍ ଆସି ଭଗବନ୍ ମୁଦତ୍ରେ ଉଲହୁ) । ଏଥିରେ ଶ୍ରୀମଦ୍ ଭଗବତ୍‌ଗୀତାର ଅକ୍ଷରାଣାମକାରୋଅସ୍ମି' (୧୦/୩୩)ତଥା ମୁଣ୍ଡକ ଉପନିଷଦର 'ଅକ୍ଷରାତ୍ସମ୍ଭବତୀହ ବିଶ୍ୱମ୍' (୧,୧, ୭)ରୁ ସାମ୍ୟ ଦ୍ରଷ୍ଟବ୍ୟ । କବି ସ୍ୱୀକାର କରିଛନ୍ତି ଯେ ଭୌତିକ ତତ୍ତ୍ୱନାଶବାନ୍ ଅଟେ, ଏହାର ସମ୍ବନ୍ଧ ଅନଶ୍ୱର ଆତ୍ମା ସହିତ ଅଛି । ଫଳ ସ୍ୱରୂପ ଦୁଃଖ ଉତ୍ପନ୍ନ ହେଉଅଛି । ଇଶ୍ୱର ଏହି ଦୁଃଖ ବିନାଶକାରୀ (କୁରଳ-୩) । ସେ ମନୁଷ୍ୟର ହୃଦୟ କମଳକୁ ପ୍ରଫୁଲ୍ଲିତ, ଆନନ୍ଦିତ କରନ୍ତି । ଜଗତ ପାପମୟ । ଏହି ଭବସାଗରକୁ ପାର ହେବା ଅତ୍ୟନ୍ତ ଦୁଷ୍କର କାର୍ଯ୍ୟ, ପରନ୍ତୁ ଭଗବାନଙ୍କ ଚରଣରେ ଶରଣ ପଶି ଏହି କାର୍ଯ୍ୟକୁ ସଂପନ୍ନ କରାଯାଇ ପାରେ । ଇଶ୍ୱର ସର୍ବଜ୍ଞ ଓ ନିଷ୍କାମ (କୁରଳ-୨, ୬) । ସେ ସତ୍ୟ ଜ୍ଞାନର ସ୍ୱରୂପ, ତାଙ୍କର ଶ୍ରୀଚରଣ ଅଦ୍ୱିତୀୟ (କୁରଳ-୨,୭) । କେତେକ ବିଦ୍ୱାନ ଏହି ଉକ୍ତିର ସମ୍ବନ୍ଧକୁ ଜୈନ ମତର 'ଅର୍ହତ' ସହିତ ସମ୍ବନ୍ଧିତ କରନ୍ତି । ପୁଣି ଅନ୍ୟ ବିଦ୍ୱାନ୍ ମତ ଦିଅନ୍ତି - ହୃଦୟ କମଳରେ ନିବାସ କର୍ତ୍ତା, ଧର୍ମ ସିନ୍ଧୁ, ଅଷ୍ଟଗୁଣ ସମ୍ପନ୍ନ ଆଦିକୁ ନେଇ ଶୈବ ଦର୍ଶନ ସହ ସଂପୃକ୍ତ କରନ୍ତି । 'ଅଷ୍ଟଗୁଣ' ଜୈନ ଦର୍ଶନକୁ ଜ୍ଞାନ ବରଣୀୟ, ଦର୍ଶନ କରଣୀୟ, ମୋହନୀୟ ଏବଂ ଅନ୍ତରାୟ (ଘାତୀୟ କର୍ମ) ତଥା ଆୟୁ, ନାମ, ଗୋତ୍ର ଏବଂ ବେଦନୀୟ (ଅଘାତୀୟ କର୍ମ) ବୋଲି ସ୍ୱୀକାର କରନ୍ତି । ପୁନଶ୍ଚ ଗୀତାରେ ବର୍ଣ୍ଣିତ ଅପରା ପ୍ରକୃତି - ପୃଥ୍ୱୀ, ଜଳ, ଅଗ୍ନି, ବାୟୁ, ଆକାଶ, "ମନ, ବୁଦ୍ଧି, ଅହଂକାର,

ଥିବା ସାଂଖ୍ୟ ଦ୍ୱାରା ସ୍ୱୀକୃତ ପଞ୍ଚତନ୍ମାତ୍ର. ଅହଂକାର, ମହତତ୍ୱ ଓ ଅବ୍ୟକ୍ତ ସହ ଅନେକ ବିଦ୍ୱାନ୍ ସମ୍ବନ୍ଧିତ କରନ୍ତି । ଏପରି ସର୍ବଜ୍ଞ ଓ ଭଗବନ୍ ଇତ୍ୟାଦି ବିଶେଷଣ ଉପରେ ଦୀର୍ଘ ସମୟ ଶାସ୍ତ୍ରାର୍ଥ କରାଯାଇଛି । କେତେକ ଈଶାଇ ଧର୍ମ ସହ ସମ୍ବନ୍ଧ ମଧ୍ୟ ସ୍ଥାପିତ କରିଛନ୍ତି, ପରନ୍ତୁ ଏହା ସର୍ବ ସ୍ୱୀକୃତ ଯେ, କବି ନିଜ ପୂର୍ବ ପରମ୍ପରା ଓ ନିଜ ଯୁଗ ଧର୍ମର ସମଗ୍ର ପ୍ରଭାବକୁ ଆତ୍ମସାତ୍ କରି ବିଭିନ୍ନ ମତଦ୍ୱାରା ଈଶ୍ୱରଙ୍କ ପରିକଳ୍ପନା କରିଛନ୍ତି । ଏହାର ଫଳ ସ୍ୱରୂପ ବିଭିନ୍ନ ଧର୍ମାବଲମ୍ବୀ କୁରଳ ଗ୍ରନ୍ଥକୁ ନିଜର ବୋଲି ସ୍ୱୀକାର କରିଛନ୍ତି ଓ ନିଜ ନିଜର ଆସ୍ଥା ଓ ବିଶ୍ୱାସକୁ ଏଥିରେ ଅନ୍ୱେଷଣ କରିଛନ୍ତି । ଏହି ମହାକାବ୍ୟଟି ବୈଦିକ କାଳର ପରମ୍ପରା, ତାମିଲ୍ ପ୍ରଦେଶର ସାଂସ୍କୃତିକ ଚେତନା, ଜୈନ ଓ ବୌଦ୍ଧ ଦୃଷ୍ଟି ତଥା ଅନ୍ୟ ପରିସ୍ଥିତିଗୁଡ଼ିକ ଆଧାର ଉପରେ ଏକ ସମନ୍ୱିତ ଦୃଷ୍ଟିକୁ ନେଇ ନିର୍ମାଣ କରାଯାଇଛି । ସଗୁଣ, ନିର୍ଗୁଣ ଉର୍ଦ୍ଧ୍ୱରେ ଆଦି ଶରଣ ପ୍ରଭୂ ଚରଣ ବନ୍ଦନା ଦ୍ୱାରା ମୁକ୍ତି ସମ୍ଭବ ଏଥିରେ ନିର୍ଦ୍ଦେଶିତ ହୋଇଛି । ଈଶ୍ୱର ହେଉଛନ୍ତି ପରମ ଦୟାଳୁ ବୋଲି ଭକ୍ତ କହେ । ସତ୍ୟ ଜ୍ଞାନ ସ୍ୱରୂପ, ନିଷ୍କାମ, ସର୍ବଜ୍ଞ ବୋଲି ଜ୍ଞାନମାର୍ଗୀ କହେ – ଯାହାକି କାବ୍ୟରେ ସୂଚିତ ହୋଇଛି ।

## ଜଗତ୍ ଏବଂ ତା'ର ନଶ୍ୱରତା

ନଶ୍ୱରତା (ନିଲୈୟାମୈ)ର ଜ୍ଞାନ ହେବା ପରେ ମନୁଷ୍ୟ ପରମ ସତ୍ୟ (ମେୟ୍ୟୁଣର୍ଭଲ୍) ପ୍ରାପ୍ତିର ମାର୍ଗ ଦିଗରେ ଅଗ୍ରସର ହୁଏ । ବଲ୍ଲୁବର ଦର୍ଶାଇଛନ୍ତି ଯେ ଭୌତିକ ସମୃଦ୍ଧି ନାଟକ ଦର୍ଶନ ନିମିତ୍ତ ରଙ୍ଗଭୂମିରେ ଆସୁଥିବା ଜନସମୂହ ସଦୃଶ । ନାଟକର ପଶ୍ଚାତ୍ ଭାଗରେ ଦର୍ଶକ ବିଶାଳ ସମୂହ ଯେପରି ରଙ୍ଗଭୂମିରୁ ଅତିଶୀଘ୍ର ପଳାୟନ କରେ, ସେହି ପ୍ରକାର ଲୌକିକ ପଦାର୍ଥ ମଧ୍ୟ ବିନଷ୍ଟ ହୁଏ (କୁରଳ-୩୩୨) । ଯେତେବେଳେ ଧନ ପ୍ରାପ୍ତି ହୁଏ ସେତେବେଳେ ଅନଶ୍ୱର ଧର୍ମ କାର୍ଯ୍ୟ କରାଯିବା ଉଚିତ୍ (କୁରଳ-୩୩୦) ସମୟ ମନୁଷ୍ୟ ଜୀବନକୁ ଧୀରେ ଧୀରେ ନଷ୍ଟ କରିଦିଏ । ଅନ୍ତିମ ସମୟ ଆସିବା ପୂର୍ବରୁ, ବେଶୀ କଥା ନକହି କର୍ମ କରି ମନୁଷ୍ୟ ହିତ କାର୍ଯ୍ୟରେ ଲାଗିଯିବା ଉଚିତ୍ (କୁରଳ-୩୦୪) । ବିଶ୍ୱର ମହିମା ଏହି ଯେ ଯିଏ କାଲି ଥିଲା, ସେ ଆଜି ନାହିଁ (କୁରଳ -୩୩୫) । ମୂର୍ଖ ମନୁଷ୍ୟ ଏହା ନ ଜାଣି ଅନେକ ପ୍ରକାର ଯୋଜନା ପ୍ରସ୍ତୁତ କରିଥାଏ(କୁରଳ-୩୩୬) । ମୃତ୍ୟୁର ଅର୍ଥ ବିନଷ୍ଟ ନୁହେଁ, ଏହା ଏକ ଗଭୀର ନିଦ୍ରା ସଦୃଶ । ପୁନଶ୍ଚ ନିଦ୍ରାଭଙ୍ଗ ଭଳି (କୁରଳ-୩୩୯)

ଆତ୍ମା ଓ ଶରୀରର ସମ୍ବନ୍ଧ ଅସ୍ଥାୟୀ । ପକ୍ଷୀ ବାହାରିଲା ପରେ, ପକ୍ଷୀ ଅଣ୍ଡାର ଖୋଳକୁ ତ୍ୟାଗ କରିଦିଏ (କୁରଳ-୮) ସମ୍ଭବତଃ ଆତ୍ମାର ସ୍ଥାୟୀ ନିବାସ ଏ ଶରୀର ନୁହେଁ, ତେଣୁ ସେ ଏ ଶରୀରରେ ଅସ୍ଥାୟୀ ନିବାସ କରିଥାଏ (କୁରଳ-୩୪୦) ବିଶ୍ୱର ନଶ୍ୱରତା ଏବଂ ଅସାରତାର ବିଶେଷ ପରିଚୟ ନେଇ କବି ମାନବ ମାତ୍ରକେ ଚିରସ୍ଥାୟୀ, ଅନଶ୍ୱର ଧର୍ମକାର୍ଯ୍ୟ ପାଇଁ ପ୍ରେରିତ ହୋଇଥିବାର ସୂଚନା ଦେଇଛନ୍ତି ।

## ପ୍ରାରବ୍ଧ ଏବଂ କର୍ମ :

ତିରୁବଲ୍ଲୁବର ଧର୍ମକାଣ୍ଡକୁ ଚାରି ଭାଗରେ ବିଭକ୍ତ କରିଛନ୍ତି । ପ୍ରଥମ ଚାରି ଅଧ୍ୟାୟର ପ୍ରସ୍ତାବନାରେ ସର୍ବେଶ ବନ୍ଦନା, ବର୍ଷାର ମହତ୍ତ୍ୱ , ସନ୍ନ୍ୟାସୀଙ୍କ ମହତ୍ତ୍ୱ ଓ ଧର୍ମର ଶକ୍ତି ବିଷୟରେ ସୂଚିତ ହୋଇଛି । ଗୃହସ୍ଥ ଧର୍ମର ଅନ୍ତର୍ଗତ ଧର୍ମପତ୍ନୀ, ସନ୍ତାନ, ସ୍ନେହଶୀଳତା, ଆତିଥ୍ୟ, ମଧୁର ଭାଷଣ, ସଂଯମ, ଶିଷ୍ଟାଚାର, ଦାନ ଆଦି ବିଷୟ ସ୍ଥାନିତ ହୋଇଛି । ସନ୍ନ୍ୟାସ ଧର୍ମଖଣ୍ଡରେ ଦୟା, ମାଂସାହାର ବର୍ଜନ, ତଥ୍ୟ, ସତ୍ୟଭାଷଣ, ଅକ୍ରୋଧ, ଅହିଂସା, ତତ୍ତ୍ୱଜ୍ଞାନ ଆଦିର ବର୍ଣ୍ଣନ ହୋଇଛି । ଭାଗ୍ୟଖଣ୍ଡରେ କେବଳ ଏକ ବିଷୟ ପ୍ରାରବ୍ଧର ଉଲ୍ଲେଖ କରାଯାଇଛି । ଏଥି ନିମିତ୍ତ ଏହାର ମହତ୍ତ୍ୱ ବିଶେଷ ବୃଦ୍ଧି ପାଇଛି । "ଉଢ଼ିୟଲ"ର ଅନ୍ତର୍ଗତ ଭାଗ୍ୟର ବିବେଚନ କର୍ମ ସିଦ୍ଧାନ୍ତର ସ୍ୱୀକୃତି ଅଛି । କେତେକ କହନ୍ତି ଉଢ଼୍ ଭାଗ୍ୟର ଅଭିପ୍ରାୟ ହେଉଛି ମନୁଷ୍ୟଦ୍ୱାରା ସମ୍ଭୃତ କର୍ମଗୁଡ଼ିକର ଶକ୍ତି ଏବେ ଉପଭୋଗ ହୋଇନାହିଁ । ଏହା ଏକ ଶକ୍ତିଶାଳୀ ତତ୍ତ୍ୱ ଏବଂ ଏହାର ପ୍ରଭାବ ଜନ୍ମରୁ ମଧ୍ୟ ମନୁଷ୍ୟ ଚରିତ୍ର ଓ କାର୍ଯ୍ୟ ଦ୍ୱାରା ନିର୍ଦ୍ଧାରିତ ହୋଇଥାଏ, କବି ଏହି ସିଦ୍ଧାନ୍ତକୁ ପ୍ରତିପାଦନ କରିଛନ୍ତି । ଏହାକୁ ସମାଜ ପାଳନ କରୁ, ଏତଦ୍ ବ୍ୟତୀତ ତା'ପାଖରେ ଅନ୍ୟ କୌଣସି ସାଧନ ନାହିଁ । ପାପ କର୍ମ କରାଗଲେ, ତା'ର ପରିଣାମ ତାକୁ ହିଁ ଭୋଗିବାକୁ ପଡ଼ିବ । ତେଣୁ ଦୁଃଖ ଓ କଷ୍ଟରୁ ତାକୁ ମୁକ୍ତ ହେବାକୁ ଚେଷ୍ଟା କରିବାକୁ ପଡ଼ିବ । ପୁନଶ୍ଚ ପୁଣ୍ୟକର୍ମ , ଯଦି ଏକ କୋଷ ସଦୃଶ, ଯିଏ ଅନେକ ଜନ୍ମ ପର୍ଯ୍ୟନ୍ତ ଆନନ୍ଦ ପୂର୍ତ୍ତିରେ ସହାୟକ ହୁଏ । ତେଣୁ ଲୋକମାନେ ଧର୍ମ ମାର୍ଗ ଅବଲମ୍ବନ କରି ଅଗ୍ରସର ହେବାର ଲକ୍ଷ୍ୟ ରଖିବା ଉଚିତ । ଏଥି ନିମିତ୍ତ ସେମାନଙ୍କୁ ଚିନ୍ତନ କରିବା ବିଧେୟ ।

ମନୁଷ୍ୟର ଭାଗ୍ୟରେ ଭଲ ଭୋଗ ହେଉଛି ଭାବି ସେ ପ୍ରଯତ୍ନ କରି ଧନ ସଞ୍ଚୟ କରେ । ଯଦି ଭାଗ୍ୟ ବିପରୀତ ହୁଏ, ସେ ଆଳସ୍ୟ ପରବଶ ହୋଇ ଧନର ବିନଷ୍ଟ କରେ (କୁରଳ-୩୭୧) । ଭାଗ୍ୟ ଯଦି ବିପରୀତ ହୁଏ, ବୁଦ୍ଧି ମନ୍ଦ ହୋଇଯାଏ । ପୁନଶ୍ଚ ଭାଗ୍ୟ ଯଦି ସପକ୍ଷରେ ଥାଏ, ବୁଦ୍ଧି ବିଶାଳ ଏବଂ ନିର୍ମଳ ହୋଇଯାଏ । (କୁରଳ-୩୭୨) । ଭାଗ୍ୟ ଅନୁକୂଳ ନ ହେଲେ ଗହନ ଶାସ୍ତ୍ର ଅଧ୍ୟୟନ କଲେ ମଧ୍ୟ, ଉଚିତ୍ ମାର୍ଗ ଅନୁସରଣ କରିପାରେ ନାହିଁ । (କୁରଳ-୩୭୬) । ମନୁଷ୍ୟ ଚାହିଁଲେ ଅତୁଳ ଧନ ବୈଭବ ସଂଗ୍ରହ କରିପାରେ କିନ୍ତୁ ତା' ଭାଗ୍ୟାନୁସାରେ ସେ ଉପଭୋଗ କରିବ (କୁରଳ-୩୭୭) । ଦୁଃଖ ଭୋଗ କର୍ମଫଳର ଅଧୀନ, ଅନ୍ୟଥା ସମସ୍ତ ଦରିଦ୍ର କାମନା ତ୍ୟାଗ କରି ସଂନ୍ୟାସୀ ହୋଇଯିବେ (କୁରଳ-୩୭୮) ମନୁଷ୍ୟ ଯେବେ ଭାଗ୍ୟବଶତଃ ସୁଖୀ ହୁଏ, ତେବେ ସେ ପ୍ରସନ୍ନ ହୁଏ,·ତେବେ ସେ ଦୁଃଖ ପ୍ରାପ୍ତ କଲେ କାହିଁକି ଦୁଃଖୀ ହୁଏ ? ( କୁରଳ - ୩୭୯) । ଭାଗ୍ୟଠୁଁ ବଳି କୌଣସି ଶକ୍ତି ନାହିଁ, ଯିଏ ଭାଗ୍ୟକୁ ହେୟ ମନେ କରିବାକୁ ଚେଷ୍ଟାକରେ ଭାଗ୍ୟ ନିଜ ପ୍ରଭାବ ଦ୍ୱାରା ତାକୁ ଅସଫଳ କରିଦିଏ (କୁରଳ-୩୭୦) । କୁରଳ ସଂଖ୍ୟା -୬୧୯ରେ ବଲ୍ଲୁବର ପ୍ରତିପାଦନ କରିଛନ୍ତି ଯେ, ଭାଗ୍ୟଦ୍ୱାରା ସିଦ୍ଧ ନ ହେଲେ ବି ମନୁଷ୍ୟର ସଂଘର୍ଷ, ପ୍ରୟାସ ଏବଂ ପରିଶ୍ରମ ନିରନ୍ତର କାର୍ଯ୍ୟକାରୀ ହେବା ଫଳରେ ଭାଗ୍ୟ ଘଟଣା ଚକ୍ରର ପରିବର୍ତ୍ତନ ହୋଇଥାଏ, ସୌଭାଗ୍ୟ ଉଦୟ ହେବା କାହା ପକ୍ଷେ ଦୋଷଯୁକ୍ତ ନୁହେଁ, ବିଚାରଦ୍ୱାରା କିନ୍ତୁ ସତ୍‌ପ୍ରୟାସ ନ କଲେ ସେ ଦୋଷରେ ଭାଗୀଦାର ହୁଏ (କୁରଳ-୬୧୮, ୬୨୦) । ତେଣୁ କବି କର୍ମର ମହତ୍ତ୍ୱକୁ, ନିଷ୍ଠାପୂର୍ବକ ଶ୍ରମକୁ ବିଶେଷ ସମ୍ମାନ ଦେଇଛନ୍ତି । ସେ ଆଳସ୍ୟ ପରିହାର କରି କର୍ମରେ ପ୍ରବୃତ୍ତ ହେବାର ସନ୍ଦେଶ ଦେଇଛନ୍ତି । ସେ ପୁନଶ୍ଚ ନିର୍ଦ୍ଦେଶ କରିଛନ୍ତି ଯେ କୌଣସି କାର୍ଯ୍ୟକୁ ଅସାଧ୍ୟ ମନେକରି ବିମୁଖ ହେବା ଉଚିତ୍ ନୁହେଁ, ଅକର୍ମଣ୍ୟ ହେବା ଅନୁଚିତ୍, କାରଣ ସତ୍ ପ୍ରୟାସର ଯଥୋଚିତ ପ୍ରଭାବ ଅନିବାର୍ଯ୍ୟ ।

## ଧର୍ମ, ପରିବାର ତଥା ସମାଜ :

ତିରୁକ୍କୁରଳ ଧର୍ମ ଖଣ୍ଡରେ ପ୍ରବୃତ୍ତି ମାର୍ଗ ଓ ନିବୃତ୍ତି ମାର୍ଗ ଉଭୟେ ପ୍ରତିପାଦିତ ହୋଇଛି । କବି ଧର୍ମର ଲକ୍ଷଣ ଏବଂ ଏହାର ରୂପ ବ୍ୟାଖ୍ୟା କରିବା ସଙ୍ଗେ ସଙ୍ଗେ

ତାହାର ମହତ୍ତ୍ୱ ଏବଂ ସଙ୍କେତ ମଧ୍ୟ ଦର୍ଶାଇଛନ୍ତି । ଧର୍ମର ଶକ୍ତି(ଅରନ୍ ବଲତୟୁରୁତ୍ତଲ) ଶୀର୍ଷକ ଅନ୍ତର୍ଗତ ଗ୍ରହଣ ଯୋଗ୍ୟ ସତ୍‌କର୍ମକୁ ଧର୍ମ ବୋଲି କୁହାଯାଇଛି (କୁରଳ-୪୦) । ମନର ନିର୍ମଳତା, ଶୁଦ୍ଧତା ହେଉଛି ବାସ୍ତବିକ ଧର୍ମ (କୁରଳ-୩୪) । ଏହି ମାର୍ଗ ଈର୍ଷା, ଲୋଭ ଏବଂ କଟୁ ବଚନର ଉର୍ଦ୍ଧ୍ୱରେ ଥାଏ (କୁରଳ-୩୫) । ଏଥିରେ ଦୁଇ ପ୍ରକାର ଉପଲବ୍ଧି ହୁଏ- ଲୌକିକ ସୁଖ ଐଶ୍ୱର୍ଯ୍ୟ ଏବଂ ପରଲୌକିକ ଆନନ୍ଦ କର୍ମ କରି କରି ଜୀବନ ବ୍ୟତୀତ କରିବା, ଅନ୍ୟଟି କର୍ମ ତ୍ୟାଗ କରି ବନପ୍ରଦେଶରେ ତପସ୍ୟା କରିବା କେଉଁଟି ଶ୍ରେଷ୍ଠ ? ପ୍ରବୃତ୍ତି ମାର୍ଗରେ ଆଧାର ଗୃହସ୍ଥାଶ୍ରମ ଯାହାର ନିର୍ମାଣ ପତିପତ୍ନୀ ଓ ସନ୍ତାନଦ୍ୱାରା ହୋଇଥାଏ । ଦାମ୍ପତ୍ୟ ସୂତ୍ରରେ ଆବଦ୍ଧ ପତିପତ୍ନୀ ଏକ ଅନ୍ୟର ପୂରକ ଅଟନ୍ତି । ଗୃହସ୍ଥର ସନ୍ତୁଳନ ନିମିତ୍ତ ପରସ୍ପର ପ୍ରେମଭାବ ଏବଂ ଅତୁଟ ବିଶ୍ୱାସର ଅନିବାର୍ଯ୍ୟ ଆବଶ୍ୟକତା ଅଛି । ପରିବାର ସଂପୂର୍ଣ୍ଣ ସମାଜର ଆଧାରଶୀଳ । ବିସ୍ତୃତ ଅର୍ଥରେ ସାମାଜିକ କର୍ତ୍ତବ୍ୟର ଆଧାରଭୂତ ଜ୍ଞାନ ଗୃହସ୍ଥ ଧର୍ମରେ ପ୍ରାପ୍ତ ହୁଏ । ମାନବ ଧର୍ମର ଶିକ୍ଷାସ୍ଥଳ ଏହିଠାରୁହିଁ ଆରମ୍ଭ ହୁଏ । ଏଠାରେ ପ୍ରେମ ସଙ୍କୁଚିତ ଭାବନାରୁ ମୁକ୍ତ ହୁଏ । ଅନ୍ୟପ୍ରତି ନିଜ ଦାୟିତ୍ୱପୂର୍ଣ୍ଣ କରିବାର ଆତ୍ମ ଗୌରବ ଏବଂ ଆତ୍ମ ସନ୍ତୋଷ ଏଠାରୁ ହିଁ ପ୍ରାପ୍ତ ହୁଏ । ବଲ୍ଲୁବର ସ୍ୱୀକାର କରିଛନ୍ତି ଯେ ବ୍ରହ୍ମଚର୍ଯ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ ଏହି ତିନୋଟି ଆଶ୍ରମ ଗୃହସ୍ଥାଶ୍ରମ; ଉପରେ ଆଶ୍ରିତ । ତେଣୁ ଧର୍ମ ପାଳନରେ ଗୃହସ୍ଥାଶ୍ରମ ସର୍ବାପେକ୍ଷା ଉର୍ଦ୍ଧ୍ୱରେ । ନରାଶ୍ରିତ, ନିର୍ଦ୍ଧନ ଓ ମୃତକର ସହାୟତା ଗୃହସ୍ଥ ଦ୍ୱାରା ହିଁ ସଂପନ୍ନ ହୋଇଥାଏ (କୁରଳ -୪୧, ୪୨) । ଧର୍ମ କାର୍ଯ୍ୟ କରିବାର ଶ୍ରେଷ୍ଠ ମାର୍ଗ ଗୃହସ୍ଥ । ଧନ ସଂଗ୍ରହ ସମୟରେ ଗୃହସ୍ଥ ନିରନ୍ତର ପାପ କର୍ମରୁ ମୁକ୍ତ ରଖିବା ପାଇଁ ଧ୍ୟାନ ଦେବା ଉଚିତ୍ । ପରିବାରରେ ପ୍ରେମ ଓ ଧର୍ମର ଆଶ୍ରୟ ଗ୍ରହଣ କଲେ ଗୃହସ୍ଥ ସନ୍ତୋଷ ପ୍ରାପ୍ତ ହୁଏ । ସେ ଅନ୍ୟ ଲୋକଙ୍କୁ ଧର୍ମରେ ପ୍ରବୃତ୍ତ କରାଏ ଏବଂ ସ୍ୱୟଂ ମଧ୍ୟ ଧର୍ମାନୁକୂଳ ଆଚରଣ କରେ (କୁରଳ - ୪୫, ୪୮) । ଏହି ଗୃହସ୍ଥର ସଂଚାଳନ ଭାର ସହଧର୍ମୀଣୀ ଏବଂ ସନ୍ତତି ଉପରେ ଥାଏ । ବଲ୍ଲୁବର ପରିବାରର ମର୍ଯ୍ୟାଦା ଜୀବନ ସଙ୍ଗିନୀ ଉପରେ ନିର୍ଭର କରିଥାଏ ବୋଲି ଦର୍ଶାଇଛନ୍ତି । ସେ ସଦ୍‌ଗୁଣ ସଂପନ୍ନା ହୋଇ ପତିଙ୍କ ଆୟାନୁସାରେ ବ୍ୟୟ ସମତା, ସତୀତ୍ୱ ରକ୍ଷା, ଯଥାଯୋଗ୍ୟ ପରିବାରର ଯଶ ଓ ଗୌରବ ବୃଦ୍ଧି ପାଇଁ ସର୍ବଦା ଯତ୍ନ ନେବା, ପତିଙ୍କ ସୁବିଧାରେ ଧ୍ୟାନ ଦେବା

ଇତ୍ୟାଦି କର୍ତ୍ତବ୍ୟ ପାଳନ ବିଷୟରେ ନିପୁଣା । ପତ୍ନୀର ଚରିତ୍ର ରକ୍ଷା ବାହ୍ୟ ବନ୍ଧନ ଦ୍ୱାରା ନୁହେଁ, ପରନ୍ତୁ ନିଜର ଇନ୍ଦ୍ରିୟ ନିଗ୍ରହ ଉପରେ ନିର୍ଭର କରେ । ଯଦି ସ୍ତ୍ରୀ ଧର୍ମପରାୟଣା ହୁଏ, ତେବେ ପରିବାରରେ ନିର୍ଦ୍ଧନତା କେବେ ବାସ କରେ ନାହିଁ । ସଦ୍‌ଗୁଣସଂପନ୍ନା ସ୍ତ୍ରୀ ସ୍ୱୟଂ ଲକ୍ଷ୍ମୀ ଓ ସରସ୍ୱତୀ ସଦୃଶା । ତାଙ୍କର ଏହି କୃତି କୃଷିପ୍ରଧାନ ଦେଶର, ଯେଉଁଠି ପୁରୁଷର ମହତ୍ତ୍ୱ ଅପେକ୍ଷାକୃତ ଅଧିକ । କୃଷକର ସ୍ତ୍ରୀର ମର୍ଯ୍ୟାଦା ତୁଳନାରେ କିଛି କମ ନୁହେଁ । ଗୃହକାର୍ଯ୍ୟ, ସନ୍ତାନ ଲାଳନ ପାଳନ, ଧର୍ମପୂର୍ବକ ଜୀବନ ଅତିବାହିତ କରିବା, ପତିଙ୍କ ପ୍ରତି ଏକନିଷ୍ଠତା ପ୍ରଭୃତି ଦୂରହ କାର୍ଯ୍ୟର ଦାୟିତ୍ୱ ସ୍ତ୍ରୀ ଉପରେ ନିର୍ଭର କରେ । ପିତାର ଗୁରୁ ଦାୟିତ୍ୱ ଯେ ପୁତ୍ର କିପରି ଜ୍ଞାନ ଓ ବୁଦ୍ଧିରେ ସଭାସ୍ଥଳର ଆଗଧାଡ଼ିରେ ବସିବ । ଶିଶୁର ସ୍ପର୍ଶରେ ଯେପରି ଶରୀରରେ ଶିହରଣ ହୁଏ, ତା'ର ଅଧୁରା ମଧୁର କଥାରେ ମନରେ ଆନନ୍ଦ ସୃଷ୍ଟି ହୁଏ । ପୁତ୍ର ଏପରି ସୁଯୋଗ୍ୟ ହେବା ଉଚିତ୍ ଯେ ସମସ୍ତେ କହିବେ ଏ କାହାର ସୁଯୋଗ୍ୟ ପୁତ୍ର ? ଲୋକଙ୍କ ମୁଖରେ ପୁତ୍ରର ବିଦ୍ୱତାର ପ୍ରଶଂସା ଶୁଣିଲେ ତା' ମାଆର ଆନନ୍ଦ । ପୁତ୍ର ଜନ୍ମ ସମୟର ଆନନ୍ଦଠାରୁ ବି ବଳି ଯାଏ । ବୁଦ୍ଧିମାନ୍, ଜ୍ଞାନୀ, ଯଶସ୍ୱୀ ସନ୍ତାନ ସନ୍ତତି ପ୍ରାପ୍ତ ବସ୍ତୁମାନଙ୍କ ମଧ୍ୟରେ ସର୍ବାପେକ୍ଷା ଶ୍ରେଷ୍ଠ ।

## ପ୍ରେମର ମହତ୍ତ୍ୱ :

ଗୃହସ୍ଥ ଜୀବନରେ ଧର୍ମର ଆଧାର ହେଉଛି ପ୍ରେମଭାବ କାରଣ ପତି, ପତ୍ନୀ ଓ ସନ୍ତାନମାନଙ୍କୁ ଏହି ତତ୍ତ୍ୱ ଗୋଟିଏ ସୂତ୍ରରେ ବାନ୍ଧିଥାଏ । ସେ କହିଛନ୍ତି ଯେ ପ୍ରେମ କୌଣସି ଅର୍ଗଳୀରେ ଆବୃତ୍ତ ନୁହେଁ, ପ୍ରିୟର ଅଶ୍ରୁବିନ୍ଦୁ ତା'ର ରହସ୍ୟର ଉଦ୍‌ଘାଟନ କରିଦିଏ । ପ୍ରେମଦ୍ୱାରା ସହୃଦୟତା ସୃଷ୍ଟି ହୁଏ ଏବଂ ଏହି ଦୁଇ ସମନ୍ୱୟରେ ମିତ୍ରତାରୂପୀ ବହୁମୂଲ୍ୟ ରତ୍ନ ଉତ୍ପନ୍ନ ହୁଏ (କୁରଳ-୭୧,୭୪) ସୂର୍ଯ୍ୟ ଅସ୍ଥିବିହୀନ ଜୀବଙ୍କୁ ନିଜ ତୀବ୍ରତାଦ୍ୱାରା ବିନଷ୍ଟ କରିଦିଅନ୍ତି, ଏହି ଦଶା ପ୍ରେମ ବିହୀନ ହୋଇଥାଏ । ପ୍ରେମର ଅଭାବରେ ଜୀବନସ୍ୱ ଭିତରେ ସୀମିତ ହୋଇ ରହିଯାଏ, ଅନ୍ୟପ୍ରତି ପ୍ରେମ ଭାବନାଯୁକ୍ତ ବ୍ୟକ୍ତି ପରୋପକାର ପାଇଁ ନିଜ ଜୀବନକୁ ଉତ୍ସର୍ଗୀକୃତ କରିଥାଏ (କୁରଳ-୭୭,୭୨) । ଯଦି ହୃଦୟରେ ପ୍ରେମର ଅଭାବ ହୁଏ, ତେବେ ବାହ୍ୟ ସୌନ୍ଦର୍ଯ୍ୟ ଓ ରୂପର ଲାଭ କ'ଣ ? ଶରୀର ଭିତରେ ଆତ୍ମାର ବନ୍ଧନ ଉଦ୍ଦେଶ୍ୟ କେବଳ ହେଉଛି ପ୍ରେମ ମାଧ୍ୟମରେ ଆନନ୍ଦ ପ୍ରାପ୍ତି । ତେଣୁ ଯେଉଁ ଶରୀରରେ ପ୍ରେମ

ବିଦ୍ୟମାନ, ସେ ହିଁ ପ୍ରକୃତ ଜୀବନ । ପ୍ରେମ ବିହୀନ ଶରୀର କେବଳ ଚର୍ମ ଓ ଅସ୍ଥି ଦ୍ୱାରା ଆବୃତ । ତେଣୁ କବି ପ୍ରେମର ମହତ୍ତ୍ୱ ପୁରୁଷ, ସ୍ତ୍ରୀ, ସନ୍ତାନ ପରିବାର, ଧର୍ମ ପଥକୁ ଅଗ୍ରସର କରାଇବା ନିମିତ୍ତ ଉଦ୍ଦିଷ୍ଟ । ବଲ୍ଲୁବରଙ୍କ ପ୍ରେମ ଲୌକିକ ଧରାତଳ ଉପରେ ପରିପକ୍ୱ ହୋଇ  ସାମାଜିକ ସମ୍ବନ୍ଧଦ୍ୱାରା ଅଭିବ୍ୟକ୍ତ ହୋଇଛି । ଏଠାରେ ଧରାତଳରେ ଆଧ୍ୟାତ୍ମିକ ଆତ୍ମାଦ୍ୱାରା ଅବଶ୍ୟ ବିସ୍ତାରିତ ହୋଇଛି ।

## ଧର୍ମ-ବ୍ୟକ୍ତିପରକ ଏବଂ ସମାଜପରକ :-

ବଲ୍ଲୁବରଙ୍କ ଧର୍ମଖଣ୍ଡର ଶେଷଭାଗ ପ୍ରମୁଖ ଦୁଇ ଭାଗରେ ବିଭକ୍ତ ହୋଇଛି

ଧର୍ମର ବ୍ୟକ୍ତିପରକ ରୂପ -ମନ : ଇନ୍ଦ୍ରିୟ ନିଗ୍ରହ, ଓ ତୃଷ୍ଣା ତ୍ୟାଗ
ବଚନ : ସତ୍ୟ ଭାଷଣ, ମଧୁର ଭାଷଣ, ମିତ ଭାଷଣ
କର୍ମ : ଅହିଂସା, ମାଂସାହାର ନିଷେଧ, ସଦାଚାର

ଧର୍ମର ସମଷ୍ଟିପରକ ରୂପ - ଅପରିଗ୍ରହ, ନିନ୍ଦାର ବର୍ଜନ, ଅକ୍ରୋଧ,
ପରସ୍ତ୍ରୀ ବର୍ଜନ, ବାହ୍ୟାଡ଼ମ୍ବର ବିରୋଧ, ପରୋପକାର,
ଅତିଥି ସତ୍କାର, ଦାନ, କୃତଜ୍ଞତା, କ୍ଷମା ଓ ଦୟା ପ୍ରଦର୍ଶନ

ଧର୍ମର ବ୍ୟକ୍ତିପରକ ରୂପ ହେଉଛି :  ମନ, ଇନ୍ଦ୍ରିୟ ନିଗ୍ରହ ଓ ତୃଷ୍ଣା ତ୍ୟାଗ

ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି -  ମନ ନିଃସନ୍ଦେହରେ ଚଞ୍ଚଳ ଏବଂ ବଡ଼ କଠିନତାରେ ବଶୀଭୂତ ହୁଏ କିନ୍ତୁ  ଅଭ୍ୟାସ ଓ ବୈରାଗ୍ୟଦ୍ୱାରା କ୍ରମେ କ୍ରମେ  ବଶକୁ ଆସେ ।

ଅସଂଶୟଂ ମହାବାହୋ ମନୋଦୁର୍ବିଗ୍ରହଂ ଚଳମ୍
ଅଭ୍ୟାସେନ ତୁକୌନ୍ତେୟବୈରାଗ୍ୟେଣଚ ଗୃହ୍ୟତେ ।

ଶ୍ରୀମଦ୍ ଭଗବତ୍ ଗୀତାକୁ ଚିନ୍ତନ କରି ବ୍ୟାବାହାରିକ ଜୀବନରେ  ପ୍ରୟୋଗ କରିବାକୁ କବି ସମସ୍ତଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ବଲ୍ଲୁବର "ଅଟକ୍କମୁଟୈମୈ" ଅର୍ଥାତ୍ ଆତ୍ମସଂଯମ ଅଧ୍ୟାୟରେ  ଆତ୍ମନିୟନ୍ତ୍ରଣର ଆବଶ୍ୟକତା  ଉପରେ ଜୋର ଦେଇଛନ୍ତି । ଆତ୍ମ ସଂଯମକୁ ଧର୍ମମାର୍ଗ ଭାବି  ତାକୁ ଅନୁସରଣ କଲେ ବ୍ୟକ୍ତି ବିଦ୍ୱାନଙ୍କଦ୍ୱାରା ସମାଦୃତ ହୁଏ । ପର୍ବତ ସମାନ ବିଶାଳ ଓ ଦୃଢ଼ ସଂଯତ ବ୍ୟକ୍ତି ଯଶଯୁକ୍ତ ହୋଇ

ସମସ୍ତଙ୍କ ଆଦରଣୀୟ ହୁଏ । ଆତ୍ମସଂଯମ ବ୍ୟକ୍ତିର ବିଶେଷ ଆକର୍ଷଣ । ପଞ୍ଚେନ୍ଦ୍ରିୟ ନିୟନ୍ତ୍ରଣ ସମ୍ବନ୍ଧରେ କବି କହନ୍ତି ଯଦି ଏହି ଇନ୍ଦ୍ରିୟଗୁଡ଼ିକ ସଂଯମ ସମ୍ଭବ ନୁହେଁ, ତେବେ ଜିହ୍ୱାର ନିୟନ୍ତ୍ରଣ ନିଶ୍ଚିନ୍ତ ରଖିବା ଉଚିତ୍, କାରଣ ବାଣୀର ଦୋଷରୁ ବହୁ କଷ୍ଟ ଭୋଗ କରିବାକୁ ହୁଏ । ଅଗ୍ନିର ଜ୍ୱାଳା ଉପଶମ ହେଲାପରେ ଶେଷରେ ଚିହ୍ନ ରହିଥାଏ, କିନ୍ତୁ ବାଣୀର ଜ୍ୱାଳା ସବୁ ସମୟପାଇଁ ଦୁଃଖକୁ ନିୟନ୍ତ୍ରଣ କରେ । ଜ୍ଞାନଯୁକ୍ତ ଇନ୍ଦ୍ରିୟ ନିଗ୍ରହୀ ବ୍ୟକ୍ତି ଯଦି କ୍ରୋଧରୁ ମୁକ୍ତ ହୁଏ, ତେବେ ଧର୍ମ ସ୍ୱୟଂ ଆସି ତାଙ୍କ ପାଖରେ ବାସ କରେ । ତେଣୁ ଗୃହସ୍ଥ ଓ ସନ୍ନ୍ୟାସୀ ଉଭୟଙ୍କ ପାଇଁ ସଂଯମର ଆବଶ୍ୟକତା ଅଛି କିନ୍ତୁ ଗୃହସ୍ଥଙ୍କ ଠାରୁ ସନ୍ନ୍ୟାସୀଙ୍କ ପାଇଁ ଇନ୍ଦ୍ରିୟ ସଂଯମର ଅଧିକ ଆବଶ୍ୟକତା ରହିଛି । ଏହା ଫଳରେ ସନ୍ନ୍ୟାସୀ ସମସ୍ତ ଜୀବପ୍ରତି ସ୍ନେହୀ ଓ ଦୟାଳୁ ହୁଅନ୍ତି । ତେଣୁ ବାଣୀ ନିୟନ୍ତ୍ରିତ ବଚନ ତତ୍ତ୍ୱଯୁକ୍ତ ହୁଏ । ଇନ୍ଦ୍ରିୟ ସଂଯମ ସନ୍ଥ ସଂପୂର୍ଣ୍ଣ ବିଶ୍ୱରେ ଯଶପ୍ରାପ୍ତ ହୁଅନ୍ତି ଏବଂ ସଂସାର ଏଭଳି ବ୍ୟକ୍ତିର ବଶରେ ରହେ ।

ସଂସାରର ପ୍ରବଳ ଆକର୍ଷଣପ୍ରତି କାମନା ସହଜ ଓ ସ୍ୱାଭାବିକ ପ୍ରବୃତ୍ତି । ବଲ୍ଲୁବର 'ଅବାଞ୍ଚରୁଉଳ' (ତୃଷ୍ଣା ଦମନ) ପ୍ରସଙ୍ଗରେ ତୃଷ୍ଣାକୁ ମହା ଦୁଃଖ ବୋଲି ବର୍ଣ୍ଣନା କରିଛନ୍ତି । ଏହାର ସମାପ୍ତ ପରେ ସ୍ଥାୟୀ ସୁଖ ପ୍ରାପ୍ତି ହୁଏ । କାମନାର ସ୍ୱଭାବ କେବେହେଁ ତୃପ୍ତ ହୁଏ ନାହିଁ, ଏହାର ତୃପ୍ତିର ପ୍ରୟାସ ନ କଲେ ସ୍ଥାୟୀ ଆନନ୍ଦ ପ୍ରାପ୍ତ ହୁଏ ନାହିଁ । ନିଷ୍କାମ ହେବାକୁ ମୁକ୍ତି କହନ୍ତି, ସତ୍ୟ କାମନାଦ୍ୱାରା ଏହା ସ୍ୱତଃ ପ୍ରାପ୍ତ ହୋଇଯାଏ । ସବୁ କାଳରେ ଜନ୍ମ ମୃତ୍ୟୁ ଚକ୍ରର ବୀଜ ହେଉଛି ତୃଷ୍ଣା, ତେଣୁ ତୃଷ୍ଣାରହିତ ମନୁଷ୍ୟ ମୁକ୍ତ ହୋଇଯାଏ । ତୃଷ୍ଣାକୁ ଭୟକରିବା ଉଚିତ୍ କାରଣ ଏହା ଅସାବଧାନ ମନୁଷ୍ୟକୁ ତା ଜାଲରେ ଛନ୍ଦି ଦିଏ ।

## ଧର୍ମ ବ୍ୟକ୍ତିପରକ ରୂପ-ବଚନ, ସତ୍ୟଭାଷଣ, ମଧୁର ଓ ମିତ ଭାଷଣ :

ତିରୁବଲ୍ଲୁବରଙ୍କ 'ସତ୍ୟ'ର କଥନ ହେଉଛି ଯିଏ କାହାକୁ କଷ୍ଟ ଅଥବା ହାନୀ ପହଞ୍ଚାଏ ନାହିଁ(କୁରଳ-୨୯୧) । ଅସତ୍ୟ କଥନରେ ଯଦି କାହାର ଲାଭ ହୁଏ, ତାକୁ ସେ 'ସତ୍ୟ'ର ଅନ୍ତର୍ଭୁକ୍ତ କରିଛନ୍ତି । ହୃଦୟରେ ଅସତ୍ୟ ବିଚାର ନ କରିଥିବା ମନୁଷ୍ୟ ସମସ୍ତଙ୍କ ହୃଦୟରେ ବାସ କରେ । ଶରୀରର ବାହ୍ୟ ସ୍ୱଚ୍ଛତା ଜଳଦ୍ୱାରା ଏବଂ ହୃଦୟର ପବିତ୍ରତା ସତ୍ୟଦ୍ୱାରା ହୋଇଥାଏ (କୁରଳ-୨୯୨, ୨୯୪, ୨୯୮) ଅସତ୍ୟ ତ୍ୟାଗଦ୍ୱାରା ମନୁଷ୍ୟଯଶସ୍ୱୀ ହୁଏ ଏବଂ ବିନା ତପସ୍ୟାରେ ସ୍ୱତଃ ଧର୍ମ ପ୍ରାପ୍ତ ହୋଇଥାଏ ।

ଧର୍ମମର୍ମଜ୍ଞ ବ୍ୟକ୍ତିମାନଙ୍କ ସ୍ନେହଯୁକ୍ତ, ପ୍ରବଞ୍ଚନା ରହିତ ବଚନ ଅତ୍ୟନ୍ତ ମଧୁର ହୋଇଥାଏ । ଦାନ ଓ କର୍ମଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ହେଉଛି ମଧୁର ବଚନ । ମଧୁର ବାଣୀ ଯୁକ୍ତ ବ୍ୟକ୍ତିପାଖରେ ଦରିଦ୍ରତା ଓ ଦୁଃଖ ଆଦୌ ସ୍ପର୍ଶକରେ ନାହିଁ, କାରଣ ସେ ଅନ୍ୟର ହୃଦୟକୁ ବିଶେଷ ଆହ୍ଲାଦିତ କରିଥାନ୍ତି । ବିଚାରରେ ପବିତ୍ରତା, ବାଣୀରେ କୋମଳତ୍ୱ ପରିପୂର୍ଣ୍ଣ ହୋଇ ଅର୍ନ୍ତଦ୍ୱେଷ ବିନଷ୍ଟ ହୋଇ ଧର୍ମର ଅଭିବୃଦ୍ଧି ହୁଏ । କଟୁ ବଚନ ହେଉଛି କଞ୍ଚାଫଳ ଏବଂ ମିଷ୍ଟ ଶବ୍ଦ ପକ୍ୱଫଳ ସଦୃଶ । ଏ ବଡ଼ ଆଶ୍ଚର୍ଯ୍ୟ କଥା ଏହି ଯେ ମିଷ୍ଟ ବଚନର ଲାଭ ଜାଣିଲେ ସୁଦ୍ଧା ମନୁଷ୍ୟ କଟୁ ବଚନ କାହିଁକି ବ୍ୟବହାର କରନ୍ତି ? ତେଣୁ ନମ୍ରତା ଓ ସ୍ନେହପୂର୍ଣ୍ଣ ମଧୁର ବଚନ ହେଉଛି ବାସ୍ତବିକ ଅଳଂକାର ।

ବ୍ୟର୍ଥ ଭାଷଣ ସମ୍ବାଦରେ ତିରୁବଲ୍ଲୁବରଙ୍କ ମତ ହେଉଛି ବୃଥା ପ୍ରଳାପ କରିବା ମିତ୍ରଙ୍କ ପ୍ରତି ଅନୁଚିତ କର୍ମଠାରୁ ମଧ୍ୟ ହୀନ ଅଟେ । ବୃଥା ପ୍ରଳାପ କରି ଅନ୍ୟକୁ ରୁଷ୍ଟ କରିବା ବ୍ୟକ୍ତି ସମସ୍ତଙ୍କ ଦୃଷ୍ଟିରେ ହେୟ ହୋଇଯାଏ । ଶ୍ରେଷ୍ଠ ବ୍ୟକ୍ତି ଯଦି ବ୍ୟର୍ଥ ପ୍ରଳାପ କରନ୍ତି ତାଙ୍କର ଯଶ କୀର୍ତ୍ତି ଓ ସମ୍ମାନ ଉଭେଇଯାଏ । ଅସଂସ୍କୃତ ନିରର୍ଥକ ବଚନ କହୁଥିବା ବ୍ୟକ୍ତିଙ୍କୁ ଧର୍ମ ବିମୁଖ କରାଇ ସମସ୍ତଙ୍କଦ୍ୱାରା ନିରାଦାର କରାଇ ଦେଇଥାଏ । ଉଚ୍ଚତର ମୂଲ୍ୟର ଜ୍ଞାତା ବିଦ୍ୱାନ୍ କୌଣସି ସମୟରେ ନିରର୍ଥକ ଶବ୍ଦର ପ୍ରୟୋଗ କରେ ନାହିଁ, ଯଦି କୁହେ ତତ୍ତ୍ୱ ଯୁକ୍ତ ଶବ୍ଦ ହିଁ ପ୍ରୟୋଗ କରେ । ମାୟା ଭ୍ରମରେ ତତ୍ତ୍ୱଜ୍ଞାନୀ ଅଜାଣତରେ ମଧ୍ୟ ବ୍ୟର୍ଥ ଶବ୍ଦ ବ୍ୟବହାର କରେ ନାହିଁ । କବିଙ୍କ ମତରେ ନିଷ୍ପ୍ରୟୋଜନ ପ୍ରଳାପ କରୁଥିବା ବ୍ୟକ୍ତି ନିତିବିହୀନ ଅଟେ ।

## ଧର୍ମର ବ୍ୟକ୍ତିପରକ ରୂପ-କର୍ମ, ଅହିଂସା ଏବଂ ମାଂସାହାର ନିଷେଧ

ତିରୁବଲ୍ଲୁବରଙ୍କ ମତ ଯେ ହିଂସା ଦ୍ୱାରା ପାପ ସମୂହ ସ୍ୱତଃ ଆକୃଷ୍ଟ ହୁଏ । ତେଣୁ ମନୁଷ୍ୟକୁ ଅହିଂସା ଧର୍ମ ନିର୍ବାହ କରିବା ଉଚିତ୍ ।କୌଲାମୈ (ଅହିଂସା)ର ଅନ୍ତର୍ଗତ ତାଙ୍କ ବିଚାର ଏହି ପ୍ରକାର ଅଟେ- "ଅନ୍ୟ ଜୀବକୁ ଅନ୍ନଦାନ ପରେ ନିଜେ ଭୋଜନ କରିବା ଏବଂ ଅନ୍ୟ ଜୀବକୁ ରକ୍ଷା କରିବା ସବୁ ଧର୍ମର ସାର । ଜୀବ ସୁରକ୍ଷାରେ ପ୍ରବୃତ୍ତ ଗୃହସ୍ଥ ସଂସାରତ୍ୟାଗୀଠାରୁ ମଧ୍ୟ ଅଧିକ ଅଟେ । ମହତ୍ତ୍ୱ ଦୃଷ୍ଟିରୁ

ସତ୍ୟ ଭାଷଣର ସ୍ଥାନ ଅହିଂସାଠାରୁ ବଳି ଅଧିକ ନୁହେଁ । ହିଂସା ଦ୍ୱାରା ପ୍ରାପ୍ତ ଧନ ଯେତେ ଉନ୍ନତିକାରୀ ହେଲେ ମଧ ତତ୍ତ୍ୱଜ୍ଞାତା ଏହାକୁ ନିକୃଷ୍ଟ ବୋଲି କହନ୍ତି । ହିଂସା କର୍ମଦ୍ୱାରା ମନୁଷ୍ୟ ରୋଗ, ଦାରିଦ୍ର୍ୟ ପ୍ରାପ୍ତ ହୁଏ । ଅନ୍ୟ ପ୍ରାଣୀର ସୁରକ୍ଷାରେ ନିଜର ଆତ୍ମଦାନ ଦରକାର ହେଲେ କରିବା ମଧ ଉଚିତ୍ । ମନୁଷ୍ୟ ଜୀବ ହତ୍ୟା ଦେଖି ମୁକ୍ତି ବିମୁଖ ହୋଇଥାଏ ଓ ଶେଷରେ ବନ୍ଧନରେ ପଡ଼େ ।

କବି ମାଂସାହାରକୁ ବିରୋଧ କରି ଦୟାଭାବ ଧର୍ମର ବିଷିଷ୍ଟ ଅଙ୍ଗ ବୋଲି କହିଛନ୍ତି । କୌଣସି ଜୀବକୁ ହତ୍ୟା କରି ତାର ମାଂସକୁ ଭୋଜନ କରିବା ବ୍ୟକ୍ତି ଦୟାଭାବ ରହିତ ହୋଇଥାଏ । (ପୁଲାଲ ମରୁତ୍ତଲ) ମାଂସାହାର ନିଷେଧ ପ୍ରସଙ୍ଗରେ ସେ ଦର୍ଶାଇଛନ୍ତି ଯେ ଅପବ୍ୟୟୀ ନିକଟରେ ଧନ ଏବଂ ମାଂସାହାରୀ ପାଖରେ ଦୟାଭାବ ଲେଶ ମାତ୍ର ନଥାଏ । ବହୁ ଲୋକ କହନ୍ତି ଆମେ ତ ଜୀବହତ୍ୟା କରୁନାହୁଁ, ମାଂସକୁ କ୍ରୟ କରୁଛୁ । ଆମର ଏଥିରେ ଦୋଷ କ'ଣ ? କବିଙ୍କ ମତ ଯେ ଯଦି ଲୋକମାନେ ମାଂସ କ୍ରୟ ନ କରିବେ ତେବେ ବିକ୍ରୟ କରିବାକୁ କାହିଁକି ପ୍ରସ୍ତୁତ କରାଯିବ ? ବିଶୁଦ୍ଧ ବୁଦ୍ଧି ସମ୍ପନ୍ନ ମନୁଷ୍ୟ ମାଂସ ଗ୍ରହଣ କରିବ ନାହିଁ । ଏହି ଦୃଷ୍ଟିରୁ ତାଙ୍କ ଚିନ୍ତନ ଜୈନ ଚିନ୍ତନର ଅଧିକ ସମୀପବର୍ତ୍ତୀ ।

**ସଦାଚାର** :

ବ୍ୟକ୍ତିପରକ ଧର୍ମରେ ସଦାଚରଣ ବିଶିଷ୍ଟ ମହତ୍ତ୍ୱ ଅଛି । ଧର୍ମର ମୂଳ ହେଲା ଆଚରଣର ପବିତ୍ରତା । ଏହାର ବିପରୀତ ହେଲା ଦୁରାଚରଣ, ଯାହା କଷ୍ଟ ଉତ୍ପନ୍ନ କରେ । ସଦାଚାରୀ ବ୍ୟକ୍ତି ଅଜଣାତରେ ମଧ ଅନୁଚିତ ଶବ୍ଦ ପ୍ରୟୋଗ କରେ ନାହିଁ । ଆଚରଣର ପବିତ୍ରତା ଦ୍ୱାରା ଯଶ ପ୍ରାପ୍ତ ହୋଇଥାଏ । ତେଣୁ ସଦାଚରଣର ମହତ୍ତ୍ୱ ପ୍ରାଣଠୁଁ ଅଧିକ । ଜ୍ଞାନୀଙ୍କ ଜ୍ଞାନ ବିସ୍ମୃତ ହୋଇଗଲେ ପୁନଃ ଅଧ୍ୟୟନଦ୍ୱାରା ତାହା ହାସଲ ହୋଇଥାଏ, କିନ୍ତୁ ଥରେ ଚରିତ୍ର ନଷ୍ଟ ହୋଇଗଲେ ତାର ପ୍ରତିଷ୍ଠା ସବୁକାଳପାଇଁ ନଷ୍ଟ ହୋଇଯାଏ । ଈର୍ଷାଳୁ ବ୍ୟକ୍ତି ସୁଖ ସମୃଦ୍ଧି ପ୍ରାପ୍ତ କରିପାରେ ନାହିଁ । ସେହିଭଳି ଚରିତ୍ରହୀନ ବ୍ୟକ୍ତିର ଯଶ ପ୍ରାପ୍ତି କେବେହେଁ ହୁଏ ନାହିଁ । ନିଷ୍ଠାବାନ୍ ବ୍ୟକ୍ତି ସଦାଚାର ଯେତେ କଷ୍ଟ ପଡ଼ିଲେ ବି ତ୍ୟାଗ କରେ ନାହିଁ । ବହୁ ପ୍ରକାର ବିଦ୍ୟା ଅଧ୍ୟୟନ କଲେ ମଧ ଯେଉଁ ବ୍ୟକ୍ତି ସମାଜ ସହ ମିଶି ଉଚିତ୍ ଆଚରଣ କରି ଜାଣେ ନାହିଁ, ସେ ସମ୍ପୂର୍ଣ୍ଣ ଅଜ୍ଞାନୀ । ବଲ୍ଲୁବର ଆଚରଣ ଶୁଦ୍ଧତାରେ କଟୁବଚନ ପ୍ରୟୋଗ ଉପରେ ଅଙ୍କୁଶ ଲଗାଇଛନ୍ତି ।

## ଲୋକାଚାର ଧର୍ମର ସମାଜଗତ ରୂପ :

**ଅପରିଗ୍ରହ** - କୌଣସି ବ୍ୟକ୍ତି ମର୍ଯ୍ୟାଦିତ ଭାବେ ସାମାଜିକ ଜୀବନ ନିର୍ବାହ କରିବା ନିତାନ୍ତ ଆବଶ୍ୟକ । ଅନ୍ୟର ସମ୍ପତ୍ତିକୁ ଛଳ, କପଟ, ଷଡ଼ଯନ୍ତ୍ର ଅଥବା ବଳପୂର୍ବକ ହସ୍ତଗତ କରିବା ଅତ୍ୟନ୍ତ ଅନ୍ୟାୟ । କୁରଲକାରଙ୍କ କଥନ ହେଉଛି ଦୁଷ୍କର୍ମରୁ ନିଷ୍କୃତି ପାଇଁ କ୍ଷଣିକ ଲାଭ ଆଶାରେ ଲୋଭର ବଶବର୍ତ୍ତୀ ହେବା ଅନୁଚିତ୍ । ବାସ୍ତବିକ ଆନନ୍ଦ ପ୍ରାପ୍ତି ଉତ୍ସୁକ ବ୍ୟକ୍ତି ଅନ୍ୟର ସମ୍ପତ୍ତି କେବେହେଁ ହସ୍ତଗତ କରେ ନାହିଁ । ଇନ୍ଦ୍ରିୟ ସଂଯମୀ, ନିଷ୍କଳଙ୍କ ବିଦ୍ୱାନ୍ ଅଭାବଗ୍ରସ୍ତ ହେଲେ ମଧ ଅନ୍ୟର ସମ୍ପତ୍ତି ଓ ଧନକୁ କରଗତ କରିବାକୁ ଇଚ୍ଛାପ୍ରକାଶ କରେ ନାହିଁ (କୁରଲ-୧୭୨,୧୭୩,୧୭୪) । ଈଶ୍ୱରୀୟ କୃପାପ୍ରାର୍ଥୀ ଧର୍ମମାର୍ଗର ପଥିକ ଯଦି ଅର୍ଥ ଲୋଭର ବଶବର୍ତ୍ତୀ ହୋଇ ପାପ କର୍ମରେ ପ୍ରବୃତ୍ତ ହୁଏ, ତେବେ ସେ ନଷ୍ଟ ହୋଇଯାଏ । କାରଣ ଲୋଭରୁ ପ୍ରାପ୍ତ ଧନକୁ ଭୋଗ କଲେ କେବେହେଁ ଆନନ୍ଦ ପ୍ରାପ୍ତି ହୁଏ ନାହିଁ । ଧର୍ମଜ୍ଞାତା, ବୁଦ୍ଧିମାନ୍, ନିର୍ଲୋଭୀ ମନୁଷ୍ୟ ଜୀବନରେ ସଫଳତା ପ୍ରାପ୍ତ ହୁଏ, ଲକ୍ଷ୍ମୀ ସ୍ୱୟଂ ତାଙ୍କ ପାଖରେ ବାସ କରନ୍ତି କିନ୍ତୁ ପର ସମ୍ପତ୍ତି ଭୋଗ ଲାଳସା ରଖିଲେ ପରିବାରର ଆନନ୍ଦ ନଷ୍ଟ ହେବା ସଙ୍ଗେ ସଙ୍ଗେ ସେ ଅପଯଶ ପାଏ ।

**ପରନିନ୍ଦା ବର୍ଜନ :** ନିନ୍ଦୁକ ପ୍ରାୟତଃ ବିଶ୍ୱାସଭାଜନ ହୋଇ ଛଳନା ରଚନା କରି ସୁସ୍ଥ ସାମାଜିକ ବାତାବରଣରେ ବିଷ ବପନ କରେ । କୌଣସି ବ୍ୟକ୍ତିକୁ ସଦ୍‌ଭାବନା ପ୍ରଦାନ କରି ତା'ସହ ସୁସ୍ଥ ଆଲୋଚନାଦ୍ୱାରା ନିଜର ଦୋଷ ସୁଧାରିବା ପାଇଁ ଅବସର ଦେବା ଉଚିତ୍ । ତା'ର ଅନୁପସ୍ଥିତିରେ ନିନ୍ଦା କରିବା ପ୍ରାୟ ଇର୍ଷା ଅଥବା ଦ୍ୱେଷାଦିର ପରିଣାମ ସ୍ୱରୂପ ଅଟେ । ତିରୁବଲ୍ଲୁବରଙ୍କ ମତ ଯେ କୌଣସି ବ୍ୟକ୍ତି ଧର୍ମର କଥା ନକହୁ, ଅଧାର୍ମିକ କର୍ମ ମଧ କରୁ କିନ୍ତୁ କାହାର ପଛରେ ନିନ୍ଦା ଭଳି ଅଧର୍ମ କଦାପି ନ କରୁ । "ପୁରଙ୍ଗ କୁରାମୈ" ଶୀର୍ଷକ ଆଲୋଚନାରେ ତାଙ୍କ ମତ ଯେ ସାମନାରେ ହସି ମିଠା କଥା କହିବା ଓ ପଛରେ ନିନ୍ଦାକରିବା ଧର୍ମର ବିରୋଧ ଓ ପାପରେ ଲିପ୍ତ ହେବା ଅପେକ୍ଷା ଅଧିକ ଅନୁଚିତ ଅଟେ । ପରନିନ୍ଦା ପାପରେ ପ୍ରବୃତ୍ତ ହୋଇ, ଧର୍ମର ଛଳନା କରିବା ଏକ ପ୍ରହସନ । ମଧୁର ବଚନ କହି ବନ୍ଧୁତ୍ୱ ରକ୍ଷା କରିବାକୁ ଅସମର୍ଥ ବ୍ୟକ୍ତି ପଛରେ ବନ୍ଧୁଙ୍କ ନିନ୍ଦା କରିବା ବଡ଼ ଭୟଙ୍କର ଅଟେ, ବନ୍ଧୁବାନ୍ଧବଙ୍କୁ ତା'

ନିକଟରୁ ଦୂରେଇ ଦେଇ ଥାଏ। ନିଜର ବନ୍ଧୁପ୍ରତି ସେ ଯେତେବେଳେ ଏପରି ବ୍ୟବହାର କରେ, ଅନ୍ୟକୁ କିପରି ଆଘାତ ନ ଦେଇପାରେ, ଅନ୍ୟର କେତେ କ୍ଷତି ନ କରିପାରେ ? ଧନ୍ୟ ଧରିତ୍ରୀ, କିପରି ଏଭଳି ନିନ୍ଦୁକ ବ୍ୟକ୍ତିକୁ ବକ୍ଷରେ ଧାରଣ କରିଛି !

**ଅକ୍ରୋଧ :** ଭଗବତ୍ ଗୀତା କହିଛି କ୍ରୋଧ ରଜଗୁଣରୁ ଉତ୍ପନ୍ନ, ମନୁଷ୍ୟର ଶତ୍ରୁ। କବି କହିଛନ୍ତି ଯେଉଁ ବ୍ୟକ୍ତି କ୍ରୋଧ ନିୟନ୍ତ୍ରଣ କରିଛନ୍ତି, ସେ ଅନ୍ୟର କ୍ଷତି ନ ପହଞ୍ଚାଇବାରେ ସମର୍ଥ ହୋଇଛନ୍ତି। ନିର୍ବଳର କ୍ରୋଧ ବୃଥା, ଶକ୍ତିଶାଳୀର କ୍ରୋଧ କିନ୍ତୁ ଏକ କୁତ୍ସିତ ରୂପ ଧାରଣ କରେ। କ୍ରୋଧ ପରିହାର ନ ହେଲେ ଅନର୍ଥର କାରଣ ହୋଇଯାଏ। କ୍ରୋଧ ଏକ ଭୟଙ୍କର ଶତ୍ରୁ, କାରଣ ଏହା ମନୁଷ୍ୟର ସମସ୍ତ ଆନନ୍ଦ ଓ ଉଲ୍ଲାସ ନଷ୍ଟ କରିଦିଏ। ନିଜକୁ ତା'ଠାରୁ ରକ୍ଷା ନ କଲେ, ସେ ସର୍ବନାଶ ହୋଇଯାଏ। ଜୀବନ ଧାରାରେ ନାବ ସଦୃଶ ସହାୟକ ଇଷ୍ଟ ବନ୍ଧୁଙ୍କ ସ୍ନେହକୁ କ୍ରୋଧ ନଷ୍ଟ କରି ଦିଏ। କ୍ରୋଧରୁ ମୋହ, ଭ୍ରାନ୍ତି, କର୍ତ୍ତବ୍ୟାକର୍ତ୍ତବ୍ୟ ବିବେକହୀନ ସ୍ଥିତି ଉତ୍ପନ୍ନ ହୁଏ। କ୍ରୋଧ ବଶୀଭୂତ ବ୍ୟକ୍ତି ମୃତକ ସଦୃଶ, କ୍ରୋଧ ତ୍ୟାଗୀ ବ୍ୟକ୍ତି ଋଷି ତୁଲ୍ୟ।

**ପରଦାର ବର୍ଜନ :** ସାମାଜିକ ଜୀବନରେ ଧୈର୍ଯ୍ୟ ଏବଂ ଦୁରାଚରଣରୁ ମୁକ୍ତ ନିମିତ୍ତ ପାରିବାରିକ ଜୀବନର ପବିତ୍ରତା ଅତ୍ୟନ୍ତ ଜରୁରୀ। ପରିବାରରେ ପତ୍ନୀର ଚରିତ୍ର ଶ୍ରେଷ୍ଠ ଓ ଆଦର୍ଶଯୁକ୍ତ ହେବା ନିତାନ୍ତ ଆବଶ୍ୟକ। ସେ ସତୀତ୍ୱଯୁକ୍ତ ହେଲେ ପ୍ରେମ ଓ ସଦ୍‌ଭାବନାରେ ପରିବାରକୁ ପରିଚାଳନା କରିବେ। ସମାଜରେ ପତ୍ନୀର ଚରିତ୍ର ରକ୍ଷା ନିମିତ୍ତ ପୁରୁଷମାନଙ୍କ ପ୍ରଥମ କର୍ତ୍ତବ୍ୟ। ନିଜର କାମ ସୁଖ ପତ୍ନୀ ପର୍ଯ୍ୟନ୍ତ ସୀମିତ ହେବା ଉଚିତ୍। ପରସ୍ତ୍ରୀ ବର୍ଜନ ସର୍ବଦୌ କାମ୍ୟ। ଏଥିରୁ ବିମୁଖ ହେବା ପ୍ରତ୍ୟେକ ପୁରୁଷର ଉନ୍ନତିର ଲକ୍ଷଣ। ସୀମାଲଂଘନ ଓ ବ୍ୟଭିଚାର ଭଳି ଅଧର୍ମ କାର୍ଯ୍ୟ ପାଇଁ ପୁରୁଷ ହିଁ ଦାୟୀ। ପରସ୍ତ୍ରୀ ସହିତ ସମ୍ପର୍କ ରଖିବା ମୂର୍ଖତା ବ୍ୟତୀତ ଅନ୍ୟ କିଛି ନୁହେଁ। ଅନ୍ୟ ଲୋକର ସ୍ତ୍ରୀକୁ ପ୍ରେମ କରିବା ଧର୍ମ ଜଗତର ସବୁଠୁଁ ନିକୃଷ୍ଟ କାର୍ଯ୍ୟ। ଯେତେ ଯିଏ ମହାନ୍ ହେଲେ ମଧ ପର ସ୍ତ୍ରୀ ପ୍ରତି ଦୃଷ୍ଟି ଦେବା ଅତୀବ ଲଜ୍ଜ୍ୟା ଜନକ ଆଚରଣ (କୁରଲ-୧୪୩, ୧୪୪)। ବ୍ୟଭିଚାରୀକୁ ଶତ୍ରୁତା, ପାପ, ଭୟ

ଓ ନିନ୍ଦାରୁ କେବେହେଁ ମୁକ୍ତି ମିଳେ ନାହିଁ । ସେ ସମାଜରେ ସଦାଚାର ବିରୋଧି; ଯେ ଅନ୍ୟ ପୁରୁଷର ସ୍ତ୍ରୀକୁ ସ୍କନ୍ଦରେ ବହନ କରେ ନାହିଁ କିମ୍ବା ବାହୁ ବନ୍ଧନରେ ବିଜଡ଼ିତ କରେ ନାହିଁ ସେ ସମୁଦ୍ରାବୃତ୍ତ ପୃଥିବୀର ବିଭିନ୍ନ ବୈଭବର ଅଧିକାରୀ ହୋଇଥାଏ । ଧର୍ମ କାର୍ଯ୍ୟ କିଛି ନ କଲେ ମଧ୍ୟ ଯେ ପରସ୍ତ୍ରୀ ପ୍ରତି ନଜର ଦିଏ ନାହିଁ ସେ ସମସ୍ତଙ୍କ ପ୍ରଶଂସାଭାଜନ ।

**ବାହ୍ୟାଡ଼ମ୍ବର ବର୍ଜନ** - ସନ୍ନ୍ୟାସୀ ବେଶ ଧାରଣ କରି ବିବିଧ ଭୋଗାଦି ସାଧନରେ ଲିପ୍ତ ସାଧୁ ଏକ ପ୍ରକାଣ୍ଡ ପ୍ରତାରକ, ସେ ନିବୃତ୍ତମାର୍ଗର ଅଧିକାରୀ ନୁହେଁ । ସନ୍ନ୍ୟାସୀ ବେଶ ଧାରଣ କରିଥିବା ଏହି ପ୍ରକାର ସାଧୁ ସମାଜର ଅନର୍ଥ କାରଣ । ତପସ୍ୱୀ ନିମନ୍ତେ ଆଚରଣର ପବିତ୍ରତା ଅନିବାର୍ଯ୍ୟ । ସମାଜରେ ସତ୍, ଅସତ୍ ଉଚିତ୍ ଓ ଅନୁଚିତ୍, ତପସ୍ୱୀ ଓ ଭଣ୍ଡର ପାର୍ଥକ୍ୟ ଜାଣିବା କଷ୍ଟକର । ଏହି ଦୃଷ୍ଟିରୁ କବି ପାଖଣ୍ଡ ଶୀର୍ଷକ ଅନ୍ତର୍ଗତ ଭଣ୍ଡ ତପସ୍ୱୀଙ୍କ ଉଲ୍ଲେଖ ପ୍ରକାରାନ୍ତରରେ ତପସ୍ୱୀ ନିମନ୍ତେ ନିଷିଦ୍ଧ କାର୍ଯ୍ୟର ସଙ୍କେତ ଦେଇଛନ୍ତି । ମନୁଷ୍ୟର ଦୁରାଚରଣକୁ ଅନ୍ୟ କେହି ଜାଣୁ ବା ନ ଜାଣୁ, ତାଙ୍କ ଭିତରେ ଇନ୍ଦ୍ରିୟ ନିଗ୍ରହର ଆବଶ୍ୟକତା ସର୍ବ ପ୍ରଥମ । ଏଥିରେ ଆସକ୍ତ ବ୍ୟକ୍ତି ସିଂହ ଗୁମ୍ଫାରେ ଘାସ ଚରିବା ସମାନ (କୁରଳ -୨୭୧,୨୭୩) । ତପସ୍ୱୀ ବେଶ ଧାରଣ କରି ପାପାଚାରୀ ମନୁଷ୍ୟ ପ୍ରଚଣ୍ଡ ଭଣ୍ଡ ଅଟେ, ଛପି ରହି ବିରାଡ଼ି ଯେପରି ପକ୍ଷୀ ଶିକାର କରେ ତାହା ସମାନ ବଞ୍ଚକ ଅଟେ । ବିରକ୍ତ ସାଧୁ କହିବା ପୂର୍ବରୁ ସେ ବାସନା ମୁକ୍ତ ହେବା ନିତାନ୍ତ ଦରକାର । ଭଣ୍ଡ ତପସ୍ୱୀର ବାହ୍ୟ ରୂପ ସୁନ୍ଦର ଦେଖାଯାଏ, ହୃଦୟ ପୋଡ଼ା ଅଙ୍ଗାର ସଦୃଶ ହୋଇଥାଏ । ତୀର୍ଥ ସ୍ଥାନ ମାନଙ୍କରେ ଅନେକ ଭଣ୍ଡ ତପସ୍ୱୀ ବେଶ ଧାରଣ କରି କୁକର୍ମରେ ଲିପ୍ତ ଥାଆନ୍ତି । ମାନବର ଅସଲ ରୂପ ତାର କର୍ମ ଓ ଆଚରଣରେ ପ୍ରକାଶ ପାଇଥାଏ । ବାହ୍ୟ ରୂପ, ବେଶ ଦ୍ୱାରା ନୁହେଁ । କାରଣ ତୀର ସିଧା ହୋଇ କ୍ଷତ ସୃଷ୍ଟି କରିଥାଏ । ବୀଣା ତେଡ଼ା ହେଲେ ବି ମଧୁର ଧ୍ୱନି ସୃଷ୍ଟି ମଧ୍ୟ କରିଥାଏ । ଯଦି ମନୁଷ୍ୟର ହୃଦୟ ଶୁଦ୍ଧ ହୋଇଥାଏ, ଲଣ୍ଡିତ ମୁଣ୍ଡ କିମ୍ବା ଜଟାଧାରୀ ହେଲେ ମଧ କିଛି ଫରକ ପଡ଼େ ନାହିଁ ।

**ପରୋପକାର** - ମାନବ ଭାବନାର ଉଚ୍ଚତର ସୋପାନରେ ପରୋପକାର ଭାବନା ସ୍ୱତଃ ଜାଗୃତ ଓ ବିକଶିତ ହୁଏ । ଆତ୍ମାର ଏକ ଶକ୍ତି ରୂପରେ ସ୍ୱୀକୃତ ଏହାର

'ସ୍ୱ' ର ବିସ୍ତାର ଅଟେ । ସାମାଜିକ ଜୀବନରେ ସହ-ଅସ୍ତିତ୍ୱର ଭାବନାର ମଧ୍ୟ ଏହା ଆଧାର । ବର୍ଷା ଜଳ ଦାନ କରୁଥିବା ମେଘ ଯେପରି ପ୍ରତ୍ୟୁପକାର ଚାହେଁ ନାହିଁ, ଠିକ୍ ସେପରି ପରୋପକାର ବଦଳରେ କୌଣସି ପ୍ରକାର ଆଶା ଚାହିଁବା ଉଚିତ୍ ନୁହେଁ । ମନୁଷ୍ୟ ଜୀବନରେ ପରିଶ୍ରମଦ୍ୱାରା ଧନ ଅର୍ଜନ କରେ । ଏହାର ଉଦ୍ଦେଶ୍ୟ ହେଉଛି ଯେ ସତ୍ ପାତ୍ରକୁ ସହାୟତା କିପରି କରାଯିବ? ସମୃଦ୍ଧ ପରୋପକାରୀ ମନୁଷ୍ୟ ସଦା ଜଳପୂର୍ଣ୍ଣ ସରୋବର ସଦୃଶ; ଠିକ୍ ସେପରି ମନୁଷ୍ୟ ଗ୍ରାମର ମଧ୍ୟ ସ୍ଥଳରେ ଥିବା ଫଳଯୁକ୍ତ ବୃକ୍ଷ ସମାନ । ପରୋପକାରୀ ଲୋକର ଧନ ମନୁଷ୍ୟକୁ ଔଷଧୀୟ ବୃକ୍ଷ ସଦୃଶ କଷ୍ଟରୁ ମୁକ୍ତ କରେ ଉଚିତ୍ କର୍ତ୍ତବ୍ୟ ଜ୍ଞାତା ଦରିଦ୍ର ହେଲେ ମଧ୍ୟ ପରୋପକାରରୁ ବିମୁଖ ହୁଏ ନାହିଁ । ଯେତେବେଳେ ସେ ସହାୟତାପେକ୍ଷୀଙ୍କୁ ସହାୟତା କରିବା ନିମିତ୍ତ ଅସମର୍ଥ ହୁଏ, ତେବେ ନିଜକୁ ଦରିଦ୍ର ବୋଲି ଭାବେ । ତେଣୁ ପରହିତ ସଂଲଗ୍ନ ବ୍ୟକ୍ତି ଜୀବନରେ ସଫଳତା 'ଶ୍ରୀ' ପ୍ରାପ୍ତ କରେ ।

**ଅତିଥି ସତ୍କାର** - କବି ତିରୁବଲ୍ଲୁବରଙ୍କ ମତ ଯେ ଗୃହସ୍ଥର ନିର୍ମାଣ ଅତିଥି ସେବା ନିମିତ୍ତ ଉଦ୍ଦିଷ୍ଟ । ଶିରୀଷ ଫୁଲ ସୁଙ୍ଘିଲେ ମୁର୍ଚ୍ଛା ହେବାକୁ ପଡ଼େ ଠିକ୍ ସେପରି ଅତିଥି ଗୃହରୁ ନିରାଶ ହୋଇ ଫେରିଲେ ହୃଦୟର ଦଶା ତଦନୁରୂପ ହୋଇଥାଏ (କୁରଳ-୮୧,୯୦) । ଅମରତ୍ୱ ଲାଭ ପାଇଁ ଅମୃତ ପାନ ସମୟରେ ମଧ୍ୟ ସହାସ୍ୟ ବଦନରେ ଅତିଥିଙ୍କୁ ସ୍ୱାଗତ ସତ୍କାର କରିବା ବାଞ୍ଛନୀୟ । ଯଥୋଚିତ ଅତିଥି ସତ୍କାର ଦ୍ୱାରା ଗୃହରେ ଲକ୍ଷ୍ମୀ ସାନନ୍ଦ ବିରାଜମାନ କରନ୍ତି । ମନୁଷ୍ୟ ନିର୍ଦ୍ଧନତା ଓ ଦୈନ୍ୟରୁ ମୁକ୍ତି ପାଏ । ଅତିଥି ସତ୍କାର ବିନା ଧନୀ ନିଜ ଧନ ସମ୍ଭାରରେ ଥିଲେ ମଧ୍ୟ ନିର୍ଦ୍ଧନ ଅଟେ (କୁରଳ ୮୨,୮୩,୮୪) । ଅତିଥି ସେବା ଦର୍ଶନର ମୂଳରେ ଶିଷ୍ଟାଚାର, ଭାତୃଭାବ ଏବଂ ସର୍ବତ୍ର ବ୍ୟାପ୍ତ ଆତ୍ମତତ୍ତ୍ୱ ନିହିତ ଥିବାର ଉପଲବ୍ଧି ହୁଏ ।

**ଦାନ** - 'ଇକୈ' ଅର୍ଥାତ୍ ଦାନ ଶୀର୍ଷକ ଦଶମ କୁରଳରେ ଅଭାବ ପୀଡ଼ିତମାନଙ୍କୁ ସହାୟତାର ମହତ୍ତ୍ୱ ପ୍ରତିପାଦନ ହୋଇଅଛି । ଅନ୍ୟ ସମସ୍ତ ଉପହାର ବଦଳରେ କୌଣସି ନା କିଛି ପ୍ରାପ୍ତ କରିବାର କ୍ଷମତା ଅଛି, କିନ୍ତୁ ଦାନରେ ସେପରି କୌଣସି ଭାବନା ନାହିଁ । ଦାନ ଦେଲାବେଳେ ଯଦି ସ୍ୱର୍ଗ ତ୍ୟାଗ କରିବାକୁ ହୁଏ ତେବେ କୁଣ୍ଠିତ ହେବାକୁ ପଡ଼େ

ନାହିଁ । ପୁନଶ୍ଚ ଦାନ ନେଲାବେଳେ ଯଦି ସ୍ୱର୍ଗ ପ୍ରାପ୍ତ ହୁଏ, ତେବେ ଦାନ ଗ୍ରହଣ କରିବା ଅନୁଚିତ୍ । ପୀଡ଼ିତ ନିର୍ଦ୍ଧନ ବ୍ୟକ୍ତି କୌଣସି ପଦାର୍ଥ ମାଗିବା ପୂର୍ବରୁ ଦାନ ଦେବା ଶ୍ରେଷ୍ଠ ମନୁଷ୍ୟର ଲକ୍ଷଣ (କୁରଳ- ୨୨୨, ୨୨୩) । ମହାକାବ୍ୟରେ ଗୃହସ୍ଥ ଓ ସନ୍ନ୍ୟାସୀ ମଧ୍ୟରେ ପାର୍ଥକ୍ୟ ସ୍ପଷ୍ଟ ଭାବେ ଦର୍ଶାଯାଇଛି । ତପସ୍ୱୀ ସ୍ୱୟଂ କ୍ଷୁଧା ନିୟନ୍ତ୍ରଣ କରେ କିନ୍ତୁ ଗୃହସ୍ଥ ଦାନଦ୍ୱାରା ଅନ୍ୟର କ୍ଷୁଧା ନିବାରଣ କରିଥାନ୍ତି, ତେଣୁ ଗୃହସ୍ଥର ଶକ୍ତି ଅଧିକ ।

**କୃତଜ୍ଞତା** - ନିଜ ପ୍ରତି କରିଥିବା ଉପକାର ପାଇଁ କୃତଜ୍ଞ ହେବା ଏକ ଶ୍ରେଷ୍ଠ ମାନବୀୟ ଗୁଣ ଯାହା ସହାୟତା ବଦଳରେ କିଛି ପ୍ରାପ୍ତ କରିଥିବା ଭାବନାରୁ ନିଜକୁ ମୁକ୍ତ କରିଥାଏ । ପୃଥିବୀ ଓ ସ୍ୱର୍ଗକୁ ଉପହାର ଦେଲେ ମଧ୍ୟ ଏହାର ମୂଲ୍ୟ ପରିଶୋଧ କରାଯାଇ ପାରି ନଥାଏ ।ଆବଶ୍ୟକତା ସମୟରେ ଦିଆଯାଇଥିବା ଶୁଦ୍ଧ କ୍ଷୁଦ୍ର ସହାୟତା ପୃଥିବୀ ଠାରୁ ଅଧିକ ଉତ୍କର୍ଷ । ଉପକାର ପରିଣାମ ତିଳ ପ୍ରମାଣ ହୋଇ ଥାଉ ପଛେ ବିଦ୍ୱାନ୍ ମନୁଷ୍ୟଙ୍କ ଦୃଷ୍ଟିରେ ତାହା ବିରାଟ ବଟ ବୃକ୍ଷ ସମାନ । ତେଣୁ କୃତଜ୍ଞତା ଉପକାର ମାତ୍ରା ଉପରେ ଆଧାରିତ ନୁହେଁ, ଉପକୃତ ହୋଇଥିବା ବ୍ୟକ୍ତିର ଗୁଣ ଗାରିମା ଉପରେ ନିର୍ଭର କରେ । ଜଣେ ନିଷ୍କଳଙ୍କ ଚରିତ୍ର ବ୍ୟକ୍ତିପ୍ରଦତ୍ତ ସହାୟତା କୁତ୍ରାପି ବିସ୍ମୃତ ହେବା ଉଚିତ୍ ନୁହେଁ । ମିତ୍ରଦ୍ୱାରା କରାଯାଇଥିବା ସହାୟତାକୁ ଜଣେ ଶ୍ରେଷ୍ଠ ବ୍ୟକ୍ତି ସାତ ଜନ୍ମ ପର୍ଯ୍ୟନ୍ତ କୃତଜ୍ଞତା ପୂର୍ବକ ସ୍ମରଣ ରଖିଥାଏ । ଉପକାରକୁ ବିସ୍ମରଣ ହେବା ଅତ୍ୟନ୍ତ ନୀଚ ବୃତ୍ତି । ଅନ୍ୟ ସବୁ ପାପରୁ ମୁକ୍ତ ହେବା ସମ୍ଭବ, କିନ୍ତୁ କୃତଘ୍ନତାରୁ ଉଦ୍ଧାର ନିମିତ୍ତ କୌଣସି ମାର୍ଗ ନାହିଁ ।

**କ୍ଷମା ଭାବନା** - କ୍ଷମା କରିବାର ଶକ୍ତି ମାନବ ସମାଜରେ ସଦ୍‌ଭାବନା ଓ ମୈତ୍ରୀ ଭାବନାକୁ ବିକଶିତ କରେ । ମାଆ ଧରିତ୍ରୀ ଏହାର ଚାକ୍ଷୁଷ ପ୍ରମାଣ । ପୃଥିବୀକୁ ଖୋଳିଥିବା ଲୋକଙ୍କୁ ମଧ୍ୟ ପୃଥିବୀ ଧାରଣ କରେ । ଠିକ୍ ଏହିପରି ନିନ୍ଦୁକ ଲୋକର କଟୁ ବଚନ ସହ୍ୟକରି ତାକୁ ସାହାଯ୍ୟ ଶ୍ରେଷ୍ଠ ଓ ମହାନ୍ ବ୍ୟକ୍ତି ହିଁ କରିଥାଏ । କୌଣସି ବ୍ୟକ୍ତି ପହଞ୍ଚାଉଥିବା ହାନି ନିମିତ୍ତ ତାକୁ କ୍ଷମା କରିଦେବା ଉଚିତ୍ ଏବଂ ତାର ସେହି କ୍ଷତିକାରକ କାର୍ଯ୍ୟକୁ ଭୁଲିଯିବା ମହାନତା ଅଟେ । ଶ୍ରେଷ୍ଠ ମାନବୀୟ ଆଚରଣ ପାଇଁ କ୍ଷମାର ଅନିବାର୍ଯ୍ୟ ଆବଶ୍ୟକତା ରହିଛି । ଶତ୍ରୁକୁ ଦଣ୍ଡ ଦେଲେ କ୍ଷଣିକ ଆନନ୍ଦ ପ୍ରାପ୍ତ ହୋଇଥାଏ, କିନ୍ତୁ ତାକୁ କ୍ଷମା ପ୍ରଦାନ କଲେ ଆନନ୍ଦ ଚିରକାଳ ପର୍ଯ୍ୟନ୍ତ ସ୍ଥାୟୀ ହୋଇ ରହେ ।

ମନ୍ଦ ଆଚରଣ ପ୍ରଦର୍ଶନ କରୁଥିବା ବ୍ୟକ୍ତିକୁ ମନ୍ଦ ଆଚରଣ ପ୍ରଦର୍ଶନ କଲେ ବିଦ୍ୱାନ୍ ସମାଜ ଏହାକୁ ଆଦର କରନ୍ତି ନାହିଁ । ଅନ୍ୟାୟ କରୁଥିବା ବ୍ୟକ୍ତିଠୁଁ ପ୍ରତିଶୋଧ ନେବା ଧର୍ମହୀନ କାର୍ଯ୍ୟ ବୋଲି ବିବେଚିତ ହୁଏ । ଯଦି କୌଣସି ବ୍ୟକ୍ତି ଅହଂକାର କାରଣରୁ ଅତ୍ୟାଚାର କରେ ତେବେ ତାକୁ କ୍ଷମା ଭାବରେ ଜୟ କରାଯାଏ । ତପ, ବ୍ରତ ଇତ୍ୟାଦି ଯେପରି ଅଧିକ ମହତ୍ତ୍ୱପୂର୍ଣ୍ଣ, ଠିକ୍ ସେପରି ଅପମାନସୂଚକ ଶବ୍ଦକୁ ଧୈର୍ଯ୍ୟପୂର୍ବକ ସହ୍ୟ କରି କ୍ଷମା ଦେବା ମଧ୍ୟ ଏକ ମହତ ସାଧନା । କବି ବଲ୍ଲୁବରଙ୍କ ମତାନୁସାରେ ସାମାଜିକ ଶାନ୍ତି ଏବଂ ପାରସ୍ପରିକ ସ୍ନେହ ସଦ୍‌ଭାବ ପାଇଁ କ୍ଷମାଭାବ ଏକ ବିଶେଷ ମହତ୍ତ୍ୱ ପୂର୍ଣ୍ଣ ବିଷୟ । ଅନ୍ୟକୁ ଦଣ୍ଡ ଦେବା କ୍ଷଣିକ ଆନନ୍ଦ ପ୍ରଦାନ କରେ, ସାମୟିକ ସନ୍ତୁଷ୍ଟି ଦେଇଥାଏ । । କ୍ଷମା ଦାନ କରିଥିବା ବ୍ୟକ୍ତି ନିଜର ମାନସିକ ଶକ୍ତି ଓ ବିଶାଳ ହୃଦୟ ପରିଚୟଦ୍ୱାରା ସମାଜରେ ସ୍ଥାୟୀ ସମ୍ମାନ ପ୍ରାପ୍ତ କରେ ।



# ତୃତୀୟ ଅଧ୍ୟାୟ

## ଅର୍ଥ (ପୋରୁଲ୍) ସାମାଜିକ ଜୀବନରେ ବିବିଧ ପକ୍ଷ :

୧. ନିଳଭିୟଲ୍‌ପାଲ୍ ନୀରତିରୀନ୍ଦଟ୍ରାହୁମ୍ ମାନ୍ଦର୍କ୍କୁ ଇନତ୍ତିୟଲ୍‌ପଦାହୁମ୍ ଅରିବୁ । (କୁରଳ-୪୦୨)

"ମାଟିର ସମ୍ପର୍କରୁ ଜଳର ସ୍ୱାଦ ପରିବର୍ତ୍ତିତ ହୋଇଥାଏ, **ଅର୍ଥ**ସଙ୍ଗତି ଅନୁସାରେ ମାନବ ବୁଦ୍ଧି ମଧ୍ୟ ବଦଳି ଯାଇଥାଏ"

2. ଅଳବଲା ବିଲ୍ଲାଦାନ୍ ବାଛର୍କେ କୁଳବଲାହ କୋଡ଼ିନ୍‌ର ନୀରୈନ୍ଦଟ୍‌ଲୁ (କୁରଳ - ୫୨୩)

"ବନ୍ଧୁବିହୀନ ମନୁଷ୍ୟର ସମ୍ପତ୍ତି ସେହି ପ୍ରକାର ବୃଥା ଯେପରି କୂଳବିହୀନ ସରୋବର"

୩ ତୁଣୈନଲମ୍ ଆକ୍କମ୍ ତରୁଉମ୍ ବିନୈନଲମ୍ ବେଣ୍ଡିୟ ଏଲ୍ଲାମ୍ ତରୁମ୍ । (କୁରଳ -୬୫୧)

"ଶ୍ରେଷ୍ଠ ମିତ୍ରର ମୈତ୍ରୀରୁ ପ୍ରାପ୍ତ 'ପ୍ରେୟ' ଏବଂ କର୍ମରୁ ପ୍ରାପ୍ତ ପବିତ୍ରତା ଦ୍ୱାରା ସମସ୍ତ 'ଶ୍ରେୟ' ସମ୍ଭବ ହୋଇଥାଏ ।"

୪ ପୋରୁଲ୍ କରୁବି କାଳମ୍ ବିନୈୟିଡ଼୍ ନୋଡୁ ଏନ୍ଦୁମ୍ ଇରୁଲ୍‌ତୀର ଏଣ୍ଡିଚ୍ ଚେୟଲ୍ । (କୁରଳ - ୬୭୫)

"ଧନ, ସାଧନ, ଅବସର, ସ୍ଥାନ ଏବଂ ନିଶ୍ଚିନ୍ତ କର୍ମ ଏହି ପାଞ୍ଚୋଟି ଉପରେ ସ୍ୱଚ୍ଛ ଚିନ୍ତନ କଲାପରେ କାର୍ଯ୍ୟ ଆରମ୍ଭ କରିବା ଉଚିତ୍ ।"

୫ ଉଗୋଲାଲ୍ ଉଟ୍ରପିନ୍ ଓଲହାମୈ ଇବରିବଣ୍ଡିନ୍ ଆରେନ୍ଦ୍ରର ଆୟନ୍ ଦବର କୋଲ୍ । (କୁରଳ-୬୬୨)

"ନିଷ୍ଫଳ ହେବା ଭଳି କର୍ମକୁ ନ କରିବା ଏବଂ କର୍ମ କରି ବିଫଳ ହୋଇଗଲେ ମଧ୍ୟ ଅବିଚଳିତ ରହିବା ଏ ଦୁଇଟି ନୀତିଜ୍ଞଙ୍କ ଲକ୍ଷଣ ।"

୬ ଏପୋରୁଲ୍ ୟାର୍ ୟାର୍ ବାୟକେଟପିନୁମ୍ ଅପ୍ପେରୁଲ୍ ମେୟପୋରୁଲ୍ କାଣ୍ପଦରିବ୍ । (କୁରଳ-୪୨୩)

"କେଉଁଠୁ କିପରି ହେଲେ ଯାହା କିଛି ଜ୍ଞାତ ହୋଇଥାଏ, ସେ କଥନର ଅନ୍ତର୍ନିହିତ ଅର୍ଥ ଓ ଭାବକୁ ଜାଣିନେବା ବୁଦ୍ଧିମାନର କାର୍ଯ୍ୟ ।"

**"ପୋରୁଲ", -(ଅର୍ଥ ବିଷୟକ ଚିନ୍ତନ) -** ମାନବ ବିକାଶର ପ୍ରକ୍ରିୟା, ଶିକ୍ଷାର ମହତ୍ତ୍ୱ, ଜ୍ଞାନର ସାମାଜିକ ଧରାତଳ, ବିଦ୍ୱତ୍-ସଭାର ବିଧି, ସାମାଜିକ ସମ୍ବନ୍ଧୀୟ ବିବିଧ ରୂପ, ସଜ୍ଜନଙ୍କ ସହ ମୈତ୍ରୀ, କୁସଙ୍ଗ ତ୍ୟାଗ, ବନ୍ଧୁବର୍ଗ ଓ ତାଙ୍କ ସହଯୋଗ, କର୍ମର ବିଧି- ଶକ୍ତି, କାଳ ଓ ସ୍ଥଳର ବୋଧ, ସାମାଜିକ ଜୀବନର ଦୁର୍ବଳ ପକ୍ଷ, ଅହଂକାର, ମୁଢ଼ତା, ନୀଚତା, ସାମାଜିକ ସଙ୍ଗଠନର ଉତ୍ସ, ଫଳସ୍ୱରୂପ ଉତ୍ପନ୍ନ ଦୋଷ, ପ୍ରୟୋଜନବିହୀନ ସମ୍ପତ୍ତି ଠୁଳ, ଦରିଦ୍ରତା, ଯାଚନା, ପ୍ରଶାସନ ଅଥବା ଅଧିକାରୀବର୍ଗ ବିଷୟକ ବିବେଚନ, ରାଜା (ନେତା)ଙ୍କ ସହ ମିତ୍ରତା, ସୈନ୍ୟ, କୋଷ, ଦୂତ ମହତ୍ତ୍ୱ ଇତ୍ୟାଦି ।

## ଅର୍ଥ (ପୋରୁଲ୍) - ସାମାଜିକ ଜୀବନର ବିବିଧ ପକ୍ଷ

ପୋରୁଲ୍ - ଅର୍ଥ ବିଷୟକ ଚିନ୍ତନ

ତିରୁକୁରଳର ପୋରୁଲ୍ ୭୦ ଅଧ୍ୟାୟରେ ବିଭକ୍ତ ହୋଇଛି । କବି ଅର୍ଥକୁ ବିସ୍ତୃତ ଭାବେ ଗ୍ରହଣ କରିଛନ୍ତି । ଏହାର ଅନ୍ତର୍ଗତ ରାଜା, ମନ୍ତ୍ରୀ, ଦୂତ, ସୈନ୍ୟ, ଖାଦ୍ୟ ଏବଂ ଏତଦ୍‌ବ୍ୟତୀତ ସାମାଜିକ ଜୀବନ ପାଇଁ ଆବଶ୍ୟକ ନୀତିର ବିଧାନ ମଧ୍ୟ ଉଲ୍ଲେଖ କରିଛନ୍ତି । ରାଜ୍ୟର ଉଦ୍ଦେଶ୍ୟ ହେଉଛି ଲୋକ ସଂଗ୍ରହ । ଏହା ଦୁଇଟି ରୂପରେ ସମ୍ଭବ - ରାଜାଙ୍କଦ୍ୱାରା ଏବଂ ପ୍ରଜାଙ୍କଦ୍ୱାରା । ତିରୁବଲ୍ଲୁବରଙ୍କ କାବ୍ୟର ଲକ୍ଷ୍ୟ ହେଉଛି କି ଉଚ୍ଚ କୋଟିର ସଜ୍ଜନ, ସଦାଚାରୀ, ଧର୍ମ ମାର୍ଗରେ ଦୃଢ଼ତା, ସମାଜ କଲ୍ୟାଣ ଭାବନା ଓ ପ୍ରେରଣାରେ ଓତପ୍ରୋତ ମାନବ ଜଡିତ । ଏହି ପ୍ରକାର ଯେଉଁ ନିୟମ ରାଜା, ଅମାତ୍ୟ, ଅଧିକାରୀବର୍ଗଙ୍କ ପାଇଁ ଉଦ୍ଦିଷ୍ଟ, ସେ ହି ନିୟମ ମଧ୍ୟ ନ୍ୟୂନାଧିକ ରୂପରେ ପ୍ରତ୍ୟେକ ମନୁଷ୍ୟଙ୍କ ପାଇଁ ଅଭିପ୍ରେତ ।

କେବଳ ଅଧିକାରୀବର୍ଗ ବିଶିଷ୍ଟ ଗୁଣ ସମ୍ପନ୍ନ ହେଲେ ମଧ୍ୟ ସମାଜର କୌଣସି ଉନ୍ନତି ହୁଏ ନାହିଁ । ସମାଜ ବିକାଶର ପ୍ରକ୍ରିୟା ପ୍ରତ୍ୟେକ ସ୍ତର ଉପରେ ନିର୍ଭର କରେ । ତେଣୁ ମାନବ ବିକାଶ ପ୍ରକ୍ରିୟା ଉପରେ ବିଚାର ବିମର୍ଶ କରାଯିବା ଉଚିତ୍ । ଜନ୍ମ ଉପରାନ୍ତ ଶିଶୁଟି ପରିବାରରେ ମାତାପିତାଙ୍କ ସ୍ନେହଛାୟା ତଳେ ଧୀରେ ଧୀରେ ବିକଶିତ ହୋଇ ବୟସ ପ୍ରାପ୍ତି ପର୍ଯ୍ୟନ୍ତ ଶିକ୍ଷା ଗ୍ରହଣ କରି ଶାରୀରିକ, ମାନସିକ ଭାବେ ସମୃଦ୍ଧ ହୋଇଥାଏ । ଏହି ବିକାଶ ପ୍ରକ୍ରିୟା ସ୍ଥିତି ସାମାଜିକ ସମ୍ବନ୍ଧରୁ ଆସିଥାଏ । ସାଙ୍ଗସାଥିଙ୍କ ନିର୍ବାଚନ, ସାମାଜିକ ସମ୍ବନ୍ଧରୁ ମିଷ୍ଟ, ତିକ୍ତ ଅନୁଭବ ଓ ଅନୁଶାସିତ ଜୀବନର ଆବଶ୍ୟକ ଗୁଣ ଯଥା ଶିଷ୍ଟ ଆଚରଣ, ଲଜ୍ଜାଶୀଳତା ଇତ୍ୟାଦି ସହିତ ତାର ପରିଚୟ ହୋଇଥାଏ । ବ୍ୟକ୍ତିଗତ ଓ ସାମାଜିକ କର୍ମ କରୁ କରୁ ସେ କର୍ମ, ଶକ୍ତି, ସମୟ, ସ୍ଥଳ ଆଦିର ଅତିରକ୍ତ କର୍ମ ସହିତ ପରିଚିତ ଓ ଅବଗତ ହୋଇଥାଏ । ସମାଜ ତ ପରିବର୍ତ୍ତନଶୀଳ, ତେଣୁ ତା'ର ପ୍ରଭାବ ପଡ଼ି ସେ ଭଲ କିମ୍ବା ମନ୍ଦ ମଧ୍ୟ ହୋଇଥାଏ । ଏହି କ୍ରମ ନିରନ୍ତର ଘଟିତ ହେଉଥାଏ । ଅନେକାନକ ଚେଷ୍ଟାର ଉପରାନ୍ତ ମଧ୍ୟ ସମାଜରେ ତ୍ରୁଟି ରହିବା ସ୍ୱାଭାବିକ । ମୂଢ଼ତା, ଅହଂକାର, ଦାରିଦ୍ର୍ୟତା ଏବଂ ଏହାର ଫଳ ସ୍ୱରୂପ ଭୀକ୍ଷା ଆଦି ସାମାଜିକ୍ ଦୋଷ ପ୍ରଭୃତି ଦୃଷ୍ଟ ହୋଇଥାଏ । ଏହାକୁ ସାମାଜିକ ଜୀବନର ରୂପରେଖରୁ ଅଲଗା ଭାବେ ପାଇବା ବ୍ୟାବାହାରିକ ରୂପରେ କେଉଁ ସମ୍ଭବ ନୁହେଁ । ଏହି ଦୃଷ୍ଟିରୁ ତିରୁକ୍କୁରଳର ଅର୍ଥଖଣ୍ଡ ସାମାଜିକ ଜୀବନର ଅଧ୍ୟୟନ ସୁବିଧା ନିମିତ୍ତ ନିମ୍ନଲିଖିତ ଉପଖଣ୍ଡରେ ବିଭକ୍ତ କରାଯାଇପାରେ ।

(କ) ମାନବର ବିକାଶ ପ୍ରକ୍ରିୟା

(ଖ) ସାମାଜିକ ସମ୍ବନ୍ଧର ବିବିଧ ରୂପ

(ଗ) କର୍ମର ବିଧି

(ଘ) ସାମାଜିକ ଜୀବନର ଦୁର୍ବଳ ପକ୍ଷ

**(କ) ମାନବର ବିକାଶ ପ୍ରକ୍ରିୟା :** ମାତାପିତାଙ୍କ ସ୍ନେହ ଓ ପ୍ରେମରେ ବିକଶିତ ହେଉଥିବା ବାଳକ ସମାଜରେ ନିଜ ପ୍ରଥମ ସ୍ଥିତି ସମ୍ବନ୍ଧରେ ଅବଗତ ହୋଇଥାଏ । ଶିକ୍ଷାର ପ୍ରକ୍ରିୟା ଏହିଠାରୁ ହିଁ ଆରମ୍ଭ ହୋଇଥାଏ । ମାନବର ଆନ୍ତରିକ ମୂଳଭୂତ ଶକ୍ତିଗୁଡ଼ିକର ବିକାଶ ଓ ତାହାର ଜ୍ଞାନ ଶିକ୍ଷାର ପଦବାଚ୍ୟ । ଶିକ୍ଷାର ପ୍ରବଳ

ଆବଶ୍ୟକତାକୁ ସ୍ୱୀକାର କରି ବଲ୍ଲୁବର କହନ୍ତି - ଅଙ୍କ ଏବଂ ଅକ୍ଷର ପ୍ରାଣୀ ମାତ୍ରକେ ନେତ୍ର ଅଟେ । ଯିଏ ଶିକ୍ଷା ପ୍ରାପ୍ତ କରିଛି ସେ ନେତ୍ର ଯୁକ୍ତ । ଅଶିକ୍ଷିତର ନେତ୍ର କେବଳ ମୁଖମଣ୍ଡଳରେ ଦୁଇଟି କ୍ଷତ ସଦୃଶ । ତେଣୁ ଆବଶ୍ୟକ ବିଷୟଗୁଡ଼ିକର ନିର୍ଦ୍ଦୋଷପୂର୍ଣ୍ଣ ଅଧ୍ୟୟନ କରିବା ଉଚିତ୍ । ତଦନନ୍ତର ତତ୍ ଅନୁସାରେ କିପରି ବ୍ୟବହାର କରାଯିବ ତାହା ସ୍ଥିର କରାଯିବା ଦରକାର । ଶିକ୍ଷା ପୃଥିବୀରେ କୂପ ସଦୃଶ । କୂପ ଯେତେ ଗଭୀର ଖୋଦିତ ହେବ, ଠିକ୍ ସେତିକି ଅଧିକା ଜଳ ନିଷ୍କାଷିତ ହେବ । ବ୍ୟକ୍ତି ଯେତେ ଶିକ୍ଷା ପ୍ରାପ୍ତ କରିବ, ତାର ବୁଦ୍ଧି ସେହିପରିମାଣରେ ସେତିକି ତୀବ୍ର ହେବ । ସେଥିଯୋଗୁଁ ବିଦ୍ୱାନ୍‌ଙ୍କ ସହିତ ମିଳନ ବିଶେଷ ଆନନ୍ଦପ୍ରଦ ଏବଂ ସେମାନଙ୍କୁ ତ୍ୟାଗ କଲେ ହୃଦୟ ବ୍ୟଥିତ ହୁଏ । ଶିକ୍ଷିତଙ୍କ ପାଇଁ ସବୁ ଦେଶ ଓ ସବୁ ସହର ନିଜର ବୋଲି ଜଣାପଡ଼େ । ଅଧିକ ଶିକ୍ଷା ଗ୍ରହଣ କଲେ ଯେପରି ଆନନ୍ଦପ୍ରଦ ଓ ଦୁଃଖଦାୟକ ସଂସାର ପ୍ରତି ଶିକ୍ଷିତ ବ୍ୟକ୍ତି ମଧ୍ୟ ଲାଭଦାୟକ ଓ ସୁଖର ସ୍ରୋତ । ଫଳତଃ ବୁଦ୍ଧିମାନ୍ ଅଧିକାଧିକ ଉପାର୍ଜନ କରିବାକୁ ଇଚ୍ଛା ପ୍ରକଟ କରେ । ଫଳତଃ ଏହା ଏକ ଅନଶ୍ୱର ଓ ମହାନ୍ ସଂପତ୍ତି ହୋଇଯାଏ ।

ଶିକ୍ଷାର ସକରାତ୍ମକ ଗୁଣ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଏବଂ ନକରାତ୍ମକ ରୂପ ଉପସ୍ଥାପିତ କରିବା ସଙ୍ଗେ ସଙ୍ଗେ କବି ଅଶିକ୍ଷାରୁ ଉତ୍ପନ୍ନ ଦୋଷ କର୍ମ ଅନ୍ତର୍ଗତ ବର୍ଣ୍ଣନା କରିଛନ୍ତି । ପଶାର ନିୟମ ନ ଜାଣି ଫାଶ ପକାଇଲେ ପରାଜୟ ନିଶ୍ଚୟହେବ ହିଁ ହେବ । ସେହିପରି ତତ୍ତ୍ୱଯୁକ୍ତ ଗ୍ରନ୍ଥଗୁଡ଼ିକ ଅଧ୍ୟୟନ ବିନା ବିଦ୍ୱାନ୍‌ଙ୍କ ସଭାରେ ପ୍ରବେଶ କଲେ ପରାଜୟ ଶେଷରେ ହେବ । ଅଶିକ୍ଷିତ ହୋଇ ଜୀବିତ ରହିଲେ ମନୁଷ୍ୟ ନିଷ୍ପ୍ରୟୋଜନ ଟାଙ୍ଗରା ଭୂମି ସଦୃଶ ହୋଇଥାଏ । ଉଚ୍ଚ କୁଳରେ ଜନ୍ମିତ ହୋଇ ଅଶିକ୍ଷିତ ହେଲେ ସେ ନିଚ କୁଳର ଶିକ୍ଷିତ ବ୍ୟକ୍ତିଠାରୁ ନିକୃଷ୍ଟ । ସୂକ୍ଷ୍ମ, ଶ୍ରେଷ୍ଠ ଓ ତୀବ୍ର ବୁଦ୍ଧି ରହିତ ବ୍ୟକ୍ତିର ରୂପଲାବଣ୍ୟ ଶୁଭ୍ର ମୃତ୍ତିକା ନିର୍ମିତ ସୁନ୍ଦର ପୁତ୍ତଳି ସଦୃଶ । ସେ ଶିକ୍ଷିତଙ୍କ ସମ୍ମୁଖରେ ମୌନ ଧାରଣ କରେ ଏବଂ ଅଶିକ୍ଷିତଙ୍କ ପାଖରେ ବଡ଼ ସଭ୍ୟ ବୋଲି ପରିଚୟ ଦିଏ ।

କଥନ ଅପେକ୍ଷା ଶ୍ରବଣର ମହତ୍ତ୍ୱ ଅଧିକ । ଶ୍ରବଣ ମାଧ୍ୟମରେ ଅଶିକ୍ଷିତ ବ୍ୟକ୍ତି ଜ୍ଞାନ ପ୍ରାପ୍ତ କରିପାରେ । ଗ୍ରନ୍ଥ ଜ୍ଞାନ ଏବଂ ସଜ୍ଜନମାନଙ୍କ ଦ୍ୱାରା ଆତ୍ମାନୁଭୂତିରୁ

ଉତ୍ପନ୍ନ ଜ୍ଞାନ ମଧ୍ୟରେ ନିଶ୍ଚିତ ପାର୍ଥକ୍ୟ ଥାଏ । ବିଦ୍ୱାନ୍‌ମାନଙ୍କ କଥନ ଗ୍ରନ୍ଥ ଜ୍ଞାନକୁ ବିକଶିତ କରେ ଏବଂ ବ୍ୟକ୍ତିକୁ ବ୍ୟାବାହାରିକ ଜୀବନର ବାସ୍ତବିକ ରୂପ ଦର୍ଶିତ କରେ । ଜିହ୍ୱାର ସ୍ୱାଦ ସବୁଠୁ ଘୃଣ୍ୟ, କିନ୍ତୁ ବିଦ୍ୱାନ୍ ମାନଙ୍କ ସରସ ବଚନ ଶୁଣିଲେ ତାହା ଅନୁପମ ସ୍ୱାଦଯୁକ୍ତ ହୋଇଥାଏ । ସୂକ୍ଷ୍ମ ଶ୍ରବଣ ବଞ୍ଚିତ ବ୍ୟକ୍ତି ନମ୍ରଭାଷୀ ହୋଇ ନଥାଏ । ବିଦ୍ୱାନ୍‌ମାନଙ୍କ କଥନରେ ଏତେ ରସପୂର୍ଣ୍ଣ ହୋଇଥାଏ ଯେ, ଲୋକ ଖାଦ୍ୟ ପାନୀୟ ବିସ୍ମୃତ ହୋଇ ସେମାନଙ୍କ ଅଭିଭାଷଣ ଶ୍ରବଣ କରିଥାଆନ୍ତି । କଲ୍ୟାଣକର ବାଣୀ ପ୍ରତ୍ୟେକ ବ୍ୟକ୍ତି ଶୁଣିବା ବିଧେୟ, କାରଣ ସମୟ ଆଗତ ହେଲେ ବିଶିଷ୍ଟ ଗୌରବର କାରଣ ହୋଇଥାଏ । ଶ୍ରବଣଦ୍ୱାରା ପ୍ରାପ୍ତ ଜ୍ଞାନର ସମ୍ପତ୍ତି ସମସ୍ତ ସମ୍ପତ୍ତିଠାରୁ ଶ୍ରେଷ୍ଠ । କବି ଏହି କଥନଗୁଡ଼ିକୁ 'ଅରିବୁଡ଼ୈମୈ' ଅର୍ଥାତ୍ ବୁଦ୍ଧିମତ୍ତା ଅଧ୍ୟାୟରେ ବର୍ଣ୍ଣନା କରିଛନ୍ତି । କୌଣସି ବିଷୟ ଇଚ୍ଛା କଲେ, କାହାଠୁଁ କିଛି ଶୁଣିଲେ ଏଥିରେ ନିହିତ ସତ୍ୟକୁ ଦେଖିବା ବୁଦ୍ଧିମତ୍ତା ଅଟେ ।

ଶିକ୍ଷାପ୍ରାପ୍ତି, ଅଶିକ୍ଷା ତ୍ୟାଗ ଏବଂ ଶ୍ରବଣ ପ୍ରାପ୍ତ ଜ୍ଞାନର ଉପରାନ୍ତ ବ୍ୟକ୍ତି ବୁଦ୍ଧିସମ୍ପନ୍ନ ହୁଏ । ଏହି ସ୍ଥିତି ପର୍ଯ୍ୟନ୍ତ ସେ ଆସୁ ଆସୁ ସାମାଜିକ ଜୀବନରେ ପ୍ରବେଶ କରିଥାଏ । ବଲ୍ଲୁବର ଏହି ସ୍ଥଳରେ ବୁଦ୍ଧିମତ୍ତାର ବ୍ୟାଖ୍ୟା କରିଛନ୍ତି । ଏହି ପରିପ୍ରେକ୍ଷୀରେ ମନର ନିୟନ୍ତଣର ବିଶେଷ ଆବଶ୍ୟକତା ଅଛି । ସମସ୍ତ ଇଚ୍ଛିତ ସ୍ଥାନକୁ ଯିବା ପାଇଁ ମନକୁ ବୁଝାଇ, ଅଶୁଭ ମାର୍ଗରୁ ମନକୁ ଲେଉଟାଇ କଲ୍ୟାଣ ମାର୍ଗରେ ମନକୁ ନିୟୋଜିତ କରିବା ବୁଦ୍ଧିମତାର କାର୍ଯ୍ୟ । ବିଧ୍ୱଂସରୁ ରକ୍ଷା ପାଇବାର ସାଧନ ଏବଂ ଶତୃମାନଙ୍କଠାରୁ ରକ୍ଷା ପାଇବାର ସୁଦୃଢ଼ ଦୁର୍ଗ ବୁଦ୍ଧିମତ୍ତା ହିଁ ଅଟେ । କବି ଏଠାରେ ବ୍ୟାବାହାରିକ ସମ୍ବନ୍ଧରେ ସ୍ପଷ୍ଟ କରି କହନ୍ତି ଯେ, ଯେଉଁପରି ବ୍ୟବହାର ଲୋକଙ୍କ ଭିତରେ ଥିବ, ସେଭଳି ବ୍ୟବହାର କରିବା ବୁଦ୍ଧିମାନର କାର୍ଯ୍ୟ । ନିଜର ବିଚାର ସରଳ ଭାବରେ ସ୍ପଷ୍ଟ କରି, ଅନ୍ୟର ଗମ୍ଭୀର ତତ୍ତ୍ୱକୁ ବୁଝିବା ପାଇଁ ପ୍ରୟାସ କରି, ଲୋକଙ୍କୁ ମିତ୍ର ଭାବନାରେ ବନ୍ଧନ କରି, ମିତ୍ରର ସମ୍ମୁଖ ପଶ୍ଚାତ୍ ସଦ୍‌ଭାବନାରେ ବନ୍ଧନ କରିବା ପ୍ରଭୃତି ସାଧାରଣ ବୁଦ୍ଧିମତ୍ତାର ପରିଚୟ । ଏହିପ୍ରକାର ବ୍ୟକ୍ତି ସମର୍ଥ ଓ ଦୂରଦର୍ଶୀ । ବୁଦ୍ଧିମାନ୍ ବ୍ୟକ୍ତି ନିଃସ୍ୱ ହେଲେ ବି ସର୍ବସମ୍ପନ୍ନ ହୋଇଥାଏ । ବୁଦ୍ଧିହୀନ ସର୍ବସମ୍ପନ୍ନ ହୋଇଥିଲେ ମଧ୍ୟ ନିଃସ୍ୱ ହୋଇଯାଏ ।

**ଜ୍ଞାନର ସାମାଜିକ ସ୍ଥିତି** - ଜ୍ଞାନ ପ୍ରାପ୍ତି ଉପରାନ୍ତ ଅନ୍ୟାନ୍ୟ ଗୁଣର ବିକାଶ ପ୍ରତି ଦୃଷ୍ଟି ନିବଦ୍ଧ ହେବା ବିଧେୟ । ମହାକବି ଜ୍ଞାନର ଐକାନ୍ତିକ ରୂପକୁ ସ୍ୱୀକୃତି ଦେବାକୁ କୁଣ୍ଠିତ ଥିଲେ । ତାଙ୍କ ମତରେ ଜ୍ଞାନର ବିସ୍ତାର ସାମାଜିକ ବିକାଶ ଦିଗରେ ଉପଯୋଗ ହେବା ଆବଶ୍ୟକ । ସ୍ୱୟଂ ଗ୍ରନ୍ଥ ଅଧ୍ୟୟନଦ୍ୱାରା ଉପାର୍ଜିତ ଜ୍ଞାନ ଅନ୍ୟକୁ ଜ୍ଞାତ କରାଇବାର ଶକ୍ତି ରହିତ ବ୍ୟକ୍ତି ଗନ୍ଧହୀନ ପୁଷ୍ପଗୁଚ୍ଛ ସହିତ ସମାନ । ଅଳ୍ପ କିଛି ନିର୍ଦ୍ଦୋଷ ଶବ୍ଦ ବ୍ୟବହାର କରି ବିଚାର ସମର୍ଥ ବ୍ୟକ୍ତି ସବୁ କାର୍ଯ୍ୟରେ ସଫଳ ହୋଇଥାଏ । ଯିଏ ଶୁଣିଲାବାଲାକୁ କଥାରେ ବଶୀଭୂତ କରିଦିଏ ଏବଂ ନଶୁଣିଲା ବାଲାକୁ ଶୁଣିବା ପାଇଁ ଇଚ୍ଛା ସୃଷ୍ଟି କରାଇଦିଏ, ସେ ପ୍ରତ୍ୟେକ ସ୍ଥଳରେ କୃତକାର୍ଯ୍ୟ ହୋଇଥାଏ । ଯିଏ ଉତ୍ତମ ରୂପେ ବିଚାର କରି ମଧୁର କଥାରେ ଯାହା ଆଦେଶ ଦିଏ, ସାରା ସଂସାର ତାକୁହିଁ ଗ୍ରହଣ କରନ୍ତି । ବାକ୍‌ପଟୁତା ଏକ ବିଶିଷ୍ଟ ଗୁଣ, ଏହା ଶବ୍ଦ ବିକାଶ ଓ ବିନାଶ ଉଭୟର ମଧ୍ୟ କାରଣ । ତେଣୁ 'ଶବ୍ଦ' ଶକ୍ତିକୁ ହୃଦୟଙ୍ଗମ କରି ତାର ପ୍ରୟୋଗ କରିବା ଉଚିତ୍ । ସର୍ବଦା ପ୍ରିୟ ଭାଷଣରେ ଅନ୍ୟ ପ୍ରୟୋଜନକୁ ହୃଦୟଙ୍ଗମ କରିବା ନିର୍ମଳ ସ୍ୱଭାବ ବିଶିଷ୍ଟ ମହାନ୍ ବ୍ୟକ୍ତିଙ୍କ ସିଦ୍ଧାନ୍ତ । ବାକ୍‌ପଟୁ, ନିରାଳସ୍ୟ ଏବଂ ନିର୍ଭୀକ ବ୍ୟକ୍ତିଙ୍କୁ କେହି ବିରୋଧୀ ଜୟ କରିପାରନ୍ତି ନାହିଁ ।

'ଶବ୍ଦ' ଉପରେ ନିୟନ୍ତ୍ରଣ ରକ୍ଷା କରିବା ଶିକ୍ଷିତ ଓ ଜ୍ଞାନୀ ବ୍ୟକ୍ତିଙ୍କ ନିମିତ୍ତ ସଭା ହେଉଛି ଏକ ପରୀକ୍ଷା ସଦୃଶ । ସଭାକୁ ଆକଳନ କରିବା, ସଭାପ୍ରତି ଅନୁକୂଳ ବ୍ୟବହାର କରିବା ସାମାଜିକ ଜୀବନରେ ସର୍ବଦା ମହତ୍ତ୍ୱପୂର୍ଣ୍ଣ ବିଷୟ । ମହାକବି ଏ ସମ୍ବନ୍ଧରେ କେତେକ ଆଧାରଭୂତ ସଙ୍କେତ ମାଧ୍ୟମରେ ବିଦ୍ୱଜନଙ୍କୁ ମାର୍ଗଦର୍ଶନ କରିବାକୁ ପ୍ରୟାସ କରିଛନ୍ତି । ଶ୍ରେଷ୍ଠ ବିଦ୍ୱାନ୍‌ମାନଙ୍କ ସଭାରେ ମୂର୍ଖତା ସଦୃଶ ପ୍ରଭାବ ଉତ୍ପନ୍ନକାରୀ ଶବ୍ଦ କେବେହେଲେ ପ୍ରୟୋଗ କରିବା ଉଚିତ୍ ନୁହେଁ । ସ୍ୱଜନମାନଙ୍କ ଅନୁପସ୍ଥିତିରେ ସଭାରେ କୌଣସି ବିଷୟ କହିବା କିମ୍ବା ସ୍ୱୀକାର କରିବା ହେଉଛି ଅମୃତକୁ ଅଶୁଦ୍ଧ ସ୍ଥଳରେ ନିକ୍ଷେପ କରିବା । କୌଣସି ବିଷୟର ଉପଯୁକ୍ତ ମର୍ମ ବୁଝି, ଘଟଣା ସମ୍ବନ୍ଧରେ ଉପଯୁକ୍ତ ସ୍ପଷ୍ଟ ଜ୍ଞାନ ଉପଲବ୍ଧି କରି ଧ୍ୟାନପୂର୍ବକ କଥନ ଆରମ୍ଭ କରିବା ଉଚିତ । ଶ୍ରୋତାଙ୍କ ଶ୍ରବଣର ଅଭିଳାଷ ଅନୁସାରେ ଜ୍ଞାନ ସମ୍ପନ୍ନ ବ୍ୟକ୍ତି ପ୍ରଥମେ ବୁଝାଇବାକୁ ଚେଷ୍ଟା କରିବେ ଏବଂ ତଦନୁସାରେ କଥନ ଆରମ୍ଭ କରିବେ । ଯେଉଁ ବ୍ୟକ୍ତି ସଭାସ୍ଥଳର ଉଦ୍ଦେଶ୍ୟ ହୃଦୟଙ୍ଗମ ନ କରି କୌଣସି ଭାଷଣ ଦେବା ଆରମ୍ଭ

କରନ୍ତି ସେ 'ଶବ୍ଦ' ପ୍ରୟୋଗ ରୀତି ସମ୍ବନ୍ଧରେ ଅନଭିଜ୍ଞ । ଅଧ୍ୟୟନ ସଂପନ୍ନ ବ୍ୟକ୍ତିର ବିଦ୍ୟା ବିଶୁଦ୍ଧ ରୂପରେ କଥନର ମର୍ମ ବୁଝି ବିଦ୍ୱାନ୍‌ମାନଙ୍କ ସମ୍ମୁଖରେ ପ୍ରକାଶିତ ହୁଏ । ଏଣୁ ଶ୍ରେଷ୍ଠ ଜ୍ଞାନୀ ବ୍ୟକ୍ତି ସମ୍ମୁଖରେ କୌଣସି ପ୍ରସଙ୍ଗ ଉପସ୍ଥାପନ କରିବା ବିକଶିତ କୃଷି କ୍ଷେତ୍ରକୁ ଜଳ ସିଞ୍ଚନ କରିବା ସଙ୍ଗେ ସମାନ ଅଟେ । ଏଥିଯୋଗୁଁ ବୁଦ୍ଧିମାନମାନଙ୍କ ସମ୍ମୁଖରେ ବୁଦ୍ଧିମାନ ଭଳି ସମ୍ଭାଷଣ କରିବା ଉଚିତ ଏବଂ ବୁଦ୍ଧିହୀନ ନିକଟରେ ଧଳା ଚୂନ ଭଳି ହୋଇଯିବା ଉଚିତ୍ । ଶ୍ରେଷ୍ଠ ଜ୍ଞାନୀଜନ ନିକଟରେ ଅଧିକ କିଛି ନିଜେ ଜଣାଇ ପ୍ରକାଶ କରିବା ଠିକ୍ ନୁହେଁ, ସେଠାରେ ନିଜର ସଂଯମତା ରକ୍ଷା କରିବା ନିତାନ୍ତ ପ୍ରୟୋଜନ । ସଭା ଉଦ୍ଦେଶ୍ୟକୁ ଲକ୍ଷ୍ୟ କରି ଅନୁକୂଳ ଆଚରଣ ପ୍ରଦର୍ଶନ କରିବା ବିଦ୍ୱାନର ଲକ୍ଷଣ । ଏହା ଜ୍ଞାନର ବିସ୍ତାର ଅଭିବ୍ୟକ୍ତି ଯୋଗୁଁ ସମ୍ଭବ ହୋଇଥାଏ । ବିଭିନ୍ନ ଗ୍ରନ୍ଥ ଅଧ୍ୟୟନ କଲେ ମଧ୍ୟ ବ୍ୟକ୍ତି ବିଦ୍ୱତ୍ ସଭାରେ ଭୟଭୀତ ହେବାର ଲକ୍ଷ୍ୟ କରାଯାଏ । ମୂର୍ଖ ଲୋକର ସାହସଠାରୁ ନିମ୍ନ ଓ ନିକୃଷ୍ଟତର ହୋଇଥାଏ । ନିର୍ଭୟ ନ ହେଲେ ସମସ୍ତ ସଦ୍‌ଗ୍ରନ୍ଥ ଅଧ୍ୟୟନ ନିଶ୍ଚିତ ବ୍ୟର୍ଥ ଅଟେ । ଯେପରି ସଂଗ୍ରାମ ସ୍ଥଳରେ ହସ୍ତରେ ଅସ୍ତ୍ର ଧରି ଶତ୍ରୁର ସମ୍ମୁଖୀନ ହେଲାବେଳେ ଭୟଭୀତ ହୋଇ ଅବସ୍ଥା ଯାହା ହୁଏ । ଯିଏ ବିଦ୍ୱାନ୍‌ମଣ୍ଡଳୀକୁ ନିଜ ଭାଷଣଦ୍ୱାରା ପ୍ରଭାବିତ କରିପାରେ ନାହିଁ ତା'ର ଅନେକ ଗ୍ରନ୍ଥ ଅଧ୍ୟୟନ ନିଷ୍ପ୍ରୟୋଜନ । ଏପରି ବ୍ୟକ୍ତି ସପ୍ରାଣ ହୋଇଥିଲେ ମଧ୍ୟ ବାସ୍ତବିକ ନିଷ୍ପ୍ରାଣ ସଦୃଶ । ସଭାକୁ ସମ୍ମୁଖୀନ ହୋଇ ନିର୍ଭୀକ ଭାଷଣ ପ୍ରଦାନ କରିବା ସଂଗ୍ରାମ ସ୍ଥଳରେ ପ୍ରାଣ ଦାନ ଦେବାଠାରୁ ମଧ୍ୟ କଠିନ । ତେଣୁ ଗ୍ରନ୍ଥାକାରଙ୍କ ବକ୍ତବ୍ୟ ହେଉଛି, ସଂଗ୍ରାମ କ୍ଷେତ୍ରରେ ଶତ୍ରୁଦ୍ୱାରା ସମାପ୍ତ ହେବା ଅନେକ ମିଳିବେ, କିନ୍ତୁ ବିଦ୍ୱାନ୍ ମଣ୍ଡଳୀରେ ନିର୍ଭୀକ ହୋଇ ରହିବା ବିରଳ ଘଟଣା । ତେଣୁ ବିଦ୍ୱାନ୍ ସଭାକୁ ପ୍ରବେଶ କରିବା ପୂର୍ବରୁ ଶ୍ରେଷ୍ଠ ବିଦ୍ୱାନଙ୍କଠାରୁ ସମସ୍ତ ବିଷୟ ଅଧ୍ୟୟନ କରିନେବା ଆବଶ୍ୟକ ଯେପରିକି ନିର୍ଭୀକ ରୂପରେ ପ୍ରତ୍ୟୁତ୍ତର ଦେବାପାଇଁ ନିୟମ ପୂର୍ବକ ତର୍କ ଶାସ୍ତ୍ରର ସତର୍କ ଅଧ୍ୟୟନ କରିନେବା ନିହାତି ଆବଶ୍ୟକ । 'ଶବ୍ଦ' ପ୍ରୟୋଗର କ୍ରମଶକ୍ତି ସମ୍ବନ୍ଧୀୟ କ୍ରମଜ୍ଞାନ ପ୍ରାପ୍ତ କରି, ସଭାର ରୀତିନୀତି ସମ୍ପୂର୍ଣ୍ଣ ହୃଦୟଙ୍ଗମ କରି, ସଭା ସମକ୍ଷରେ ନିଜ ମୁଖରେ ଅନୁଚିତ ଶବ୍ଦ କୌଣସି ଭାବେ ପ୍ରୟୋଗ ନକରି, ବିଦ୍ୱାନ୍ ବ୍ୟକ୍ତି ନିର୍ଭୀକଭାବେ ଦଣ୍ଡାୟମାନ ହେବା ବିଧେୟ । ନିଜେ ଅଧ୍ୟୟନ କରିଥିବା

ଜ୍ଞାନ ପ୍ରଭାବୋତ୍ପାଦକ ଢ଼ଙ୍ଗରେ ଯେଉଁ ବ୍ୟକ୍ତି ବିଦ୍ୱାନ୍‌ମାନଙ୍କ ସଭାରେ ଉପସ୍ଥାପନ କରେ ସେ ଯଥାର୍ଥରେ ବିଦ୍ୱାନ୍ ।

## ସାମାଜିକ ସମ୍ବନ୍ଧୀୟ ବିଭିନ୍ନ ରୂପ :

ରାଜ୍ୟ ଶାସନ ନିମିତ୍ତ ରାଜାଙ୍କୁ ଶ୍ରେଷ୍ଠ ଓ ଗୁଣୀ ବ୍ୟକ୍ତିମାନଙ୍କ ସାହଚର୍ଯ୍ୟ ଉପରେ ବିଶେଷ ମହତ୍ତ୍ୱ ପ୍ରଦାନ କରାଯାଇଥାଏ । ଏହା ଅତ୍ୟନ୍ତ ସତ୍ୟ କଥନ । ସାମାଜିକ ସମ୍ବନ୍ଧୀୟ ବଭିନ୍ନ ରୂପରେ ଏହିଭଳି ଅନେକ କଥନ ବିବେଚନ ପରିସରଭୂକ୍ତ । ମନ୍ତ୍ରୀ କିମ୍ବା ରାଜ୍ୟର କୌଣସି ଅନ୍ୟ ଅଧିକାରୀଙ୍କ ଗୁଣ,କର୍ମ ଇତ୍ୟାଦି ଏହି ସନ୍ଦର୍ଭର ଅନ୍ତର୍ଗତ ହୋଇଅଛି । ତେଣୁ ପ୍ରତ୍ୟେକ ସାମାଜିକ ପ୍ରାଣୀ ଏହାର ଉପଯୋଗ କରି ସଫଳତା ମାର୍ଗରେ ଅଗ୍ରସର ହୋଇଥାଏ । ଏହି ନିୟମ କେବଳ ରାଜା ଏବଂ ସେମାନଙ୍କ ଅମାତ୍ୟ ନିମିତ୍ତ ଉଦ୍ଦିଷ୍ଟ ନୁହେଁ, ଗ୍ରନ୍ଥାକାରଙ୍କ ମତରେ ଏହା ପ୍ରତ୍ୟେକ ବ୍ୟକ୍ତିଙ୍କ ଗ୍ରାହ୍ୟ ଏବଂ ସର୍ବଯୁଗୀୟ ସିଦ୍ଧାନ୍ତ ।

ଶ୍ରେଷ୍ଠ ବ୍ୟକ୍ତିମାନଙ୍କ ମଧ୍ୟରେ ଧର୍ମଜ୍ଞ ଏବଂ ଜ୍ଞାନୀଙ୍କ ବିଷୟ ବିଶେଷ ଉଲ୍ଲେଖ ଯୋଗ୍ୟ । ଏହି ସଜ୍ଜନମାନଙ୍କ ମୈତ୍ରୀ ଏବଂ ସେମାନଙ୍କ ମହାନତାକୁ ହୃଦୟଙ୍ଗମ କରି ଯଥାନୁସାରେ ପ୍ରାପ୍ତ କରିବା ବିଧେୟ । ଶିର ଉପରେ ଘୋଟି ଆସୁଥିବା ବିପତ୍ତିକୁ ଦୂରକରି, ଭବିଷ୍ୟତର ବିପତ୍ତିପ୍ରତି ସତର୍କ ରହି, ଯୋଗ୍ୟ ବ୍ୟକ୍ତିମାନଙ୍କୁ ସମ୍ମାନ ପ୍ରଦର୍ଶନ କରି ସେମାନଙ୍କୁ ସାହଚର୍ଯ୍ୟ ପ୍ରାର୍ଥନା କରିବା ସମୁଚିତ । ଶ୍ରେଷ୍ଠ ବ୍ୟକ୍ତିମାନଙ୍କୁ ସମ୍ମାନ ଦେଇ ଆପଣାର କରିନେବା ହେଉଛି ଦୁର୍ଲଭ ପଦାର୍ଥମାନଙ୍କ ମଧ୍ୟରେ ଦୁର୍ଲଭ । ଯେପରି ଯୋଗ୍ୟ ଏବଂ ଶ୍ରେଷ୍ଠ ବ୍ୟକ୍ତିଙ୍କ ସାହଚର୍ଯ୍ୟର ଶକ୍ତି ସହଜ ଉପଲବ୍ଧ ହେବ ଏବଂ ଶତ୍ରୁ କୌଣସି ପ୍ରକାର ବାଧା ଉତ୍ପନ୍ନ କରିପାରିବେ ନାହିଁ, ସେଥିପ୍ରତି ସଜାଗ ରହିବାକୁ ହେବ । ମୂଳଧନ ବିନା ଲାଭ ଅପ୍ରାପ୍ୟ ହୋଇଥାଏ । ସଜ୍ଜନଙ୍କ ମୈତ୍ରୀ ତ୍ୟାଗଦ୍ୱାରା ଅନେକ ବ୍ୟକ୍ତିଙ୍କ ସହ ଶତ୍ରୁତା ଦଶଗୁଣ ବୃଦ୍ଧି ପାଇ ବିଶେଷ ହାନୀପ୍ରଦ ହୋଇଥାଏ ।

ସଜ୍ଜନଙ୍କ ସହ ବନ୍ଧୁତା ନିଶ୍ଚିତ ଆନନ୍ଦର ଉତ୍ସ ଏବଂ କୁସଙ୍ଗ ଦୁଃଖର ହେତୁ ଅଟେ । ସଜ୍ଜନ ସହ ମୈତ୍ରୀ ହେଲେ କୁସଙ୍ଗ ଅପସରି ଯାଇଥାଏ । ଭୂମିର ଗୁଣ ଯୋଗୁଁ ଜଳରେ ପରିବର୍ତ୍ତନ ହୋଇଥାଏ । ଠିକ୍ ସେପରି ମନୁଷ୍ୟ ସଙ୍ଗ ଗୁଣାନୁକୂଳ

ବୁଦ୍ଧି ପ୍ରାପ୍ତ ହୋଇଥାଏ । ମନ ଏବଂ କର୍ମ ଉଭୟର ଶୁଦ୍ଧତା; ସଙ୍ଗର ଶୁଦ୍ଧତା ଉପରେ ନିର୍ଭର କରେ । ମନର ପବିତ୍ରତା ମାନବର ବୈଭବ ଅଟେ । ସଙ୍ଗର ବିଶୁଦ୍ଧତା ସକଳ ସୁଯଶ ପ୍ରଦାନ କରିଥାଏ । ମନ ସମ୍ପୂର୍ଣ୍ଣ ପବିତ୍ର ହେଲା ପରେ ମଧ୍ୟ ବୁଦ୍ଧିମାନ ଲୋକ ନିମିତ୍ତ ସଙ୍ଗର ପବିତ୍ରତା ବିଶେଷ ସହାୟକ ଭାବେ ସିଦ୍ଧ ହୋଇଥାଏ । ମନର ପବିତ୍ରତା ସ୍ୱର୍ଗସୁଖ ପ୍ରଦାନ କରେ ଏବଂ ସତ୍‌ସଙ୍ଗର ପବିତ୍ରତା ଯୋଗୁଁ ଶ୍ରେଷ୍ଠତର ହୋଇଥାଏ । ମନୁଷ୍ୟର ବୁଦ୍ଧି ଯାହାକି ମନରେ ଉପସ୍ଥିତ ଭଳି ପ୍ରତୀତ ହୋଇଥାଏ । ବସ୍ତୁତଃ ଏହା ସତ୍‌ସଙ୍ଗର ପରିଣାମ ବୋଲି କୁହାଯାଇପାରେ । ବଲ୍ଲୁବରଙ୍କ ମତ ଯେ ସତ୍‌ସଙ୍ଗଠାରୁ ବଳି ଅଧିକ ସହାୟକ ବୋଲି ଜୀବନରେ ଆଉ କିଛି ନାହିଁ ଏବଂ ଅସତ୍‌ସଙ୍ଗଠାରୁ ଅଧିକ କୌଣସି ଅହିତକର ଶତ୍ରୁ ନାହିଁ ।

ସାମାଜିକ ଜୀବନରେ ବିଶ୍ୱାସ ଯୋଗ୍ୟ ସାଙ୍ଗସାଥି ଓ ସହଯୋଗୀ ନିର୍ବାଚନ କରିବା ଏକ କଠିନ କାର୍ଯ୍ୟ । ସହଯୋଗୀ ଯେ କେବଳ ଦୈନିକ ଜୀବନକୁ ସୁଚାରୁ ସଞ୍ଚାଳନ ନିମିତ୍ତ ଆବଶ୍ୟକ, ବରଂ ବିଶିଷ୍ଟ ଅବସର ଉପଲକ୍ଷେ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ସଂପାଦନ କରିବାରେ ତାର ଉଲ୍ଲେଖନୀୟ ଯୋଗଦାନର ବୈଶିଷ୍ଟ୍ୟ ରହିଛି । କାବ୍ୟସ୍ରଷ୍ଟାଙ୍କ ମତ ଯେ, କୁଳୀନ, ନିର୍ଦ୍ଦୋଷ ଓ ଅପଯଶ ରହିତ ମନୁଷ୍ୟ ସହଯୋଗୀ ନିମିତ୍ତ କେବଳ ଉପଯୁକ୍ତ । ଶ୍ରେଷ୍ଠତା ଓ ନୀଚତା ପରୀକ୍ଷା କରିବାର କଷଟି ହେଉଛି ମନୁଷ୍ୟର କର୍ମ । କେଉଁ କାର୍ଯ୍ୟ ପାଇଁ କେଉଁ ମନୁଷ୍ୟ ଶ୍ରେଷ୍ଠ ଏହା ନିର୍ଣ୍ଣୟ କରିବା ସମୟରେ ତାର ଧର୍ମ, ଅର୍ଥ, କାମ ବିଷୟକ ଜୀବନ ଦୃଷ୍ଟି ଓ ପ୍ରାଣ ସଙ୍କଟବେଳେ ତା'ର ପ୍ରତିକ୍ରିୟା ବିଶେଷ ବିଚାରଯୋଗ୍ୟ । ରାଗ ଓ ଦୋଷକୁ ବିବେଚନା କରି ଏବଂ ଚରିତ୍ରକୁ ବିଶ୍ଳେଷଣ କରି ବିଶ୍ୱାସନୀୟ ବ୍ୟକ୍ତିକୁ ନିର୍ବାଚନ କରିବାକୁ ହେବ । ନଚେତ୍ ପ୍ରେମ ପରବଶ ହୋଇ ବିନା ବିଶ୍ଳେଷଣରେ ନିର୍ବାଚନ କଲେ ପରିସ୍ଥିତି କଷ୍ଟପ୍ରଦ ହୋଇଥାଏ । ବନ୍ଧୁବାନ୍ଧବବିହୀନ ବ୍ୟକ୍ତି ଅଧିକ ବିଶ୍ୱାସର ପାତ୍ର ହୋଇଥାଏ । କାରଣ ସେ ମମତା ଶୂନ୍ୟ ହୋଇ ନିଷ୍ଠାର ସହ କାର୍ଯ୍ୟ କରିଥାଏ ।

ରାଜ୍ୟ ପରିଚାଳନା ନିମିତ୍ତ ଅଧିକାରୀମାନଙ୍କ ନିର୍ବାଚନ ଏବଂ କ୍ଷମତାନୁସାରେ କାର୍ଯ୍ୟ ବଣ୍ଟନ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥିତି । ଏହି ପ୍ରକାର ଜୀବନରେ ବିଭିନ୍ନ ସ୍ତରରେ ହୋଇଥିବା ଭିନ୍ନାଭିନ୍ନ କାର୍ଯ୍ୟ ପୂର୍ତ୍ତି ନିମନ୍ତେ ସତ୍‌ପାତ୍ର ଅନ୍ୱେଷଣ ଏବଂ ଏହା ଉପରାନ୍ତ ପାତ୍ରାନୁକୂଳ କର୍ମର ବିତରଣ ପର୍ଯ୍ୟାପ୍ତ ଏକ କଠିନ କାର୍ଯ୍ୟ । ମହାକବି ଏହା

ସଂପର୍କରେ କିଞ୍ଚିତ୍ ଆଧାରଭୂତ ସଙ୍କେତ ପ୍ରଦାନ କରିଛନ୍ତି ଯାହାଦ୍ୱାରା ଉଚିତ୍ ନିର୍ଣ୍ଣୟ କରିବା ସମ୍ଭବ ହୋଇପାରେ ।

ସ୍ନେହ ବୁଦ୍ଧି, ନିଶ୍ଚଳତା ଏବଂ ନିର୍ଲୋଭତା- ଏହି ଚର୍ତୁଗୁଣଯୁକ୍ତ ବ୍ୟକ୍ତି ପୂର୍ଣ୍ଣତଃ ନିଷ୍ପକ୍ଷ ନିର୍ଣ୍ଣୟ କ୍ଷମତା ହାସଲ କରିଥାଏ । ଯେ କୌଣସି ପରୀକ୍ଷା କରାଗଲେ ମଧ୍ୟ ମନୁଷ୍ୟର ସ୍ୱଭାବ ବିଶିଷ୍ଟ ଦାୟିତ୍ୱ ଗ୍ରହଣ କରିବା କାରଣରୁ ପରିବର୍ତ୍ତିତ ହୋଇଥାଏ । ଶୁଭାଶୁଭର ସମ୍ୟକ୍ ସମୀକ୍ଷା କରି ଶୁଭ କର୍ମରେ ପ୍ରବୃତ୍ତ ହେବା କ୍ଷମତା ହାସଲ କରିପାରିଥାଏ ।କୌଣସି ବ୍ୟକ୍ତିକୁ କାର୍ଯ୍ୟ ସମର୍ପଣ କରିବା ପୂର୍ବରୁ ଦୃଷ୍ଟି ଦେବା ଉଚିତ୍ ଯେ ଅଧିକାରୀ ବ୍ୟକ୍ତି ସମସ୍ତ ବାଧା ବିଘ୍ନ ସହ୍ୟ କରି ବୁଦ୍ଧି ଖଟାଇ କାର୍ଯ୍ୟ ସଂପାଦନ କରିପାରିବ । ତେଣୁ କର୍ମ, କର୍ତ୍ତା ଓ ଅନୁକୂଳ ସମୟ ଏହି ତିନୋଟିକୁ ବିଚାର କରି କୌଣସି କାର୍ଯ୍ୟରେ ପ୍ରବୃତ୍ତ ହେବା ଉଚିତ୍ ।

ସାମାଜିକ ଜୀବନର ଆଧାର ହେଉଛି ପାରସ୍ପରିକ ମଧୁର ସମ୍ବନ୍ଧ ଏବଂ ସଦ୍‌ଭାବନାଯୁକ୍ତ ସହାୟତାର ଭାବ । ଏଥି ନିମିତ୍ତ ବନ୍ଧୁବାନ୍ଧବଙ୍କ ସହିତ ସଦ୍‌ଭାବ ଓ ସୌହାର୍ଦ୍ଦ୍ୟ ସୃଷ୍ଟି କରି ରଖିବାର ଆବଶ୍ୟକତା ଅଛି । ସୁଖ ଦୁଃଖର ଚକ୍ର ଅତୀବ ବିଚିତ୍ର । କୌଣସି ବ୍ୟକ୍ତିକୁ ସର୍ବଦା ସୁଖ କିମ୍ବା ଦୁଃଖ ପ୍ରାପ୍ତ ହୁଏ ନାହିଁ । ତେଣୁ ଦୁଃଖଦ କାଳରେ ବନ୍ଧୁବାନ୍ଧବ ସୁଖ ଦ୍ୱିଗୁଣିତ କରିବା ବାଞ୍ଛନୀୟ, ଯେପରିକି ଦୁଃଖ ଅବସର ବେଳେ ସହାନୁଭୂତି ଲାଭ କରି ସହ୍ୟ କରିବା କ୍ଷମତା ଗ୍ରହଣ କରିବ ।

ବଲ୍ଲୁବରଙ୍କ କଥନ ଯେ ବନ୍ଧୁବର୍ଗଙ୍କ ଅତୁଟ ପ୍ରେମ ପ୍ରାପ୍ତ ହୋଇ ମନୁଷ୍ୟ ଜୀବନର ବିକାଶ ଓ ସୌଭାଗ୍ୟ ନିରନ୍ତର ପ୍ରାପ୍ତ ହୋଇଥାଏ । ବନ୍ଧୁ ସଂପର୍କୀୟଙ୍କ ଏହା ଏକ ବିଶିଷ୍ଟ ଗୁଣ ଯେ ସେମାନେ କୌଣସି ଅବସ୍ଥାରେ ଆତ୍ମୀୟଙ୍କୁ ତ୍ୟାଗ କରିବେ ନାହିଁ । ବିଶେଷତଃ ଦାରିଦ୍ର୍ୟ ସମୟରେ ଦୂରେଇ ଯିବେ ନାହିଁ ଏବଂ ପୂର୍ବ ଭଳି ସମ୍ବନ୍ଧ ବଜାୟ ରଖିବେ । ଧନୀ ବ୍ୟକ୍ତି ନିର୍ଦ୍ଧନ ବନ୍ଧୁକୁ ଧନ ପ୍ରାପ୍ତିରେ ସହାୟକ ହେବା ସଦ୍‌ବ୍ୟବହାର ପର୍ଯ୍ୟାୟଭୁକ୍ତ । ନିକଟ ସମ୍ବନ୍ଧୀୟମାନେ ଦାନୀ, ଅକ୍ରୋଧୀ, ମିଷ୍ଟଭାଷୀ ହେବା ଉଚିତ । ଘାଟ ନଥିବା ଜଳାଶୟ ସଦୃଶ ବନ୍ଧୁ ବିହୀନ ସେପରି ସାରହୀନ । କାକ ପ୍ରାପ୍ତ ବସ୍ତୁକୁ ଲୁକ୍କାୟିତ କରି ରଖେ ନାହିଁ, ବରଂ ଅନ୍ୟ ବନ୍ଧୁମାନଙ୍କୁ ନିକଟକୁ ଡ଼ାକେ । ଏପରି ଯାହାର ସ୍ୱଭାବ ତାର ଶ୍ରୀବୃଦ୍ଧି ନିଶ୍ଚିତ ହୋଇଥାଏ । ଯଦି କୌଣସି

କାରଣରୁ ବନ୍ଧୁ ନିଜେ ସମ୍ବନ୍ଧ ବିଚ୍ଛେଦ କରି ବସେ, ତଥାପି ପୁନଃ ସମ୍ବନ୍ଧ ସ୍ଥାପନ କରିବାକୁ ଇଚ୍ଛା କଲେ ତାକୁ ସ୍ୱାଗତ କରିବା ଉଚିତ ।

ସଦ୍ ବ୍ୟବହାର ସାମାଜିକ ଜୀବନ ନିମିତ୍ତ ନିତାନ୍ତ ଅନିବାର୍ଯ୍ୟ । କାରଣ ଶିଷ୍ଟ ଆଚରଣ ସଜ୍ଜନ ବ୍ୟକ୍ତିଙ୍କ ଶ୍ରେଷ୍ଠ ଗୁଣ । ବିନମ୍ର ବାର୍ତ୍ତାଳାପ ମାଧ୍ୟମରେ ଶିଷ୍ଟ ଆଚରଣ ନାମକ ସଦାଚାର ପ୍ରାପ୍ତି ସହଜ ଉପଲବ୍ଧି ହୁଏ । ହାସ୍ୟରସ ମାଧ୍ୟମରେ ନିନ୍ଦା କରିବା କାହାର ପସନ୍ଦ ନୁହେଁ । ବ୍ୟବହାର କୁଶଳ ବ୍ୟକ୍ତି ଶତ୍ରୁ ନିକଟରେ ମଧ୍ୟ ଶିଷ୍ଟତା ପ୍ରଦର୍ଶନ କରନ୍ତି । ଏହି ଲୋକ ଶିଷ୍ଟଜନଙ୍କ ଆଧାର ଉପରେ ହିଁ ତିଷ୍ଠି ରହିଛି, ଅନ୍ୟଥା ମାଟିରେ କେଉଁ କାଳରୁ ମିଳାଇ ଯାଇଥାଆନ୍ତା । ବଲ୍ଲୁବରଙ୍କ ମତାନୁସାରେ ଶିଷ୍ଟାଚାରବିହୀନ ବ୍ୟକ୍ତି ଛୁରୀ ସଦୃଶ ତୀକ୍ଷ୍ଣ ବୁଦ୍ଧି ସମ୍ପନ୍ନ ହେଲେ ମଧ୍ୟ ବୃକ୍ଷ ସମାନ ଜଡ଼ ଅଟେ । ଶରୀର ଏବଂ ରୂପ ସମାନତା ଆଧାର ଉପରେ କେହି କାହାର ବନ୍ଧୁ ହୋଇ ରହି ନ ଥାଏ, କିନ୍ତୁ ଶିଷ୍ଟ ଆଚରଣ ଯୁକ୍ତ ମୈତ୍ରୀ ବିଶେଷ ଆଦୃତ ହୁଏ । ଅଶିଷ୍ଟ ବ୍ୟକ୍ତି ଅତୁଳ ସଂପତ୍ତି ପ୍ରାପ୍ତ ହୋଇଥିଲେ ବି ସମସ୍ତ ବ୍ୟର୍ଥ ହୋଇଥାଏ । ମାତ୍ର ଦୋଷରୁ ଯେପରି ସ୍ୱଚ୍ଛ କ୍ଷୀର ନଷ୍ଟ ହୋଇଯାଏ; ସେପରି ଅସତ୍ ଆଚରଣ ଯୋଗୁଁ ସମ୍ପତ୍ତି ମଧ୍ୟ ଦୋଷଯୁକ୍ତ ହୋଇଥାଏ । ଏହି ଜନଲୋକରେ ନ୍ୟାୟଯୁକ୍ତ, କୃତଜ୍ଞ, ହିତଚିନ୍ତକ, ଶିଷ୍ଟାଚାର ବ୍ୟକ୍ତି ବିଶେଷ ସମ୍ମାନୀତ ହୁଅନ୍ତି ।

## କର୍ମର ବିଧି- ଶକ୍ତି, କାଳ ଓ ସ୍ଥଳ ବୋଧ :

ଭାରତୀୟ ବିଚାରଧାରାନୁସାରେ କର୍ମ ପ୍ରଶ୍ନ ବିଶେଷ ଚର୍ଚ୍ଚିତ ହୋଇଥାଏ । କର୍ମ କ'ଣ, କିପରି କରାଯିବା ଦରକାର, କର୍ମ ନିମିତ୍ତ କେଉଁ କେଉଁ ବିଷୟ ପ୍ରତି ଧ୍ୟାନ ରଖାଯିବା ଦରକାର, ଇତ୍ୟାଦି ପ୍ରତ୍ୟେକ ମନୁଷ୍ୟ ବିଚାରକୁ ନେଇଥାଏ । ତେଣୁ କର୍ମ, କର୍ମର ବିଧି, ତାର ବିଭିନ୍ନ ପ୍ରସଙ୍ଗ ସମ୍ବନ୍ଧୀୟ ଅଧ୍ୟୟନ ସାମାଜିକ ଜୀବନରେ ନିଶ୍ଚିତ ଆବଶ୍ୟକତା ରହିଛି । ମହାକବି ବଲ୍ଲୁବର ବୋଧଯୁକ୍ତ କର୍ମ (ତରିନ୍ଦୁ ସେୟଲ୍ ବସୈ), ଶକ୍ତି ବୋଧ (ବଲିୟରିଦଲ୍), କାଳବୋଧ (କାଳ ମରିଦଲ୍), ସ୍ଥଳ ବୋଧ(ଇଡ଼ନ୍ ରିଦଲ୍) ଶୀର୍ଷକ ଅନ୍ତର୍ଗତ କର୍ମ ଏବଂ ଏହାର ସମ୍ପାଦନ ସହିତ ସମ୍ବନ୍ଧ ପ୍ରଶ୍ନର ସମାଧାନ ପ୍ରସ୍ତୁତ କରିଛନ୍ତି । ଏହାର କିଞ୍ଚିତ୍ ଅଂଶର ବିଶ୍ଳେଷଣ ଯଦି ଯୁଦ୍ଧ ସନ୍ଦର୍ଭରେ କରାଯାଏ, ତଦ୍ୱାରା କେତେକ ତଥ୍ୟ ଉପଲବ୍ଧ ହୋଇପାରେ ।

ବଲ୍ଲୁବର ଯୁଦ୍ଧ ସମ୍ବନ୍ଧରେ କହନ୍ତି; ବିଭିନ୍ନ ପରିସ୍ଥିତିଗ ବିଚାର ବିନା ଆକ୍ରମଣ କରିବା ହେଉଛି ଶତ୍ରୁକୁ ସୁଦୃଢ଼ ଭୂମି ପ୍ରଦାନ କରିବାର ସୁଯୋଗ ଦେବା । ତାଙ୍କ ମତରେ କର୍ମ ଦୁଇ ପ୍ରକାର - କରଣୀୟ ଓ ଅକରଣୀୟ । କରଣୀୟ କର୍ମ ନ କଲେ ବିନାଶ ନିଶ୍ଚିତ ଏବଂ ଅକରଣୀୟ କର୍ମରେ ପ୍ରବୃତ୍ତ ହେଲେ ବିନାଶ ନିଶ୍ଚିତ । କର୍ମ ଆରମ୍ଭ କରିବା ପୂର୍ବରୁ ଏହାର ସମସ୍ତ ଦିଗ ପ୍ରତି ଧ୍ୟାନ ଦେବା ଅନିବାର୍ଯ୍ୟ । କାରଣ ପରବର୍ତ୍ତୀ ଅବସ୍ଥାରେ ଅନୁଶୋଚନା କରିବା ମୂର୍ଖତା ଅଟେ । କର୍ମର ସମସ୍ତ ଦିଗ ପ୍ରତି ବିଚାର ବିବେଚନ କରି, ପରିଚିତ ବନ୍ଧୁମାନଙ୍କ ସହ ବିଚାର ବିମର୍ଶ କରି ସେଥିରେ ପ୍ରବେଶ କରିବା ନିତାନ୍ତ ଆବଶ୍ୟକ । କର୍ମ ସାଧନପଥ ମଧ୍ୟ ଉଚିତ୍ ହେବା ବିଧେୟ, ଅନ୍ୟ ବ୍ୟକ୍ତିମାନଙ୍କ ସହାୟତା ବିନା ସଫଳତା ପ୍ରାପ୍ତ ଅସମ୍ଭବ । ସ୍ୱଭାବ ଅନୁସାରେ କର୍ମ କରିବା ମଧ୍ୟ ସହଜ ହୋଇଥାଏ । ଲୋକ ଜୀବନରେ କର୍ମ ଲୋକାନୁକୂଳ ହେବା ଉଚିତ୍ ଏବଂ ଯାହା ଲୋକ ପ୍ରତିକୂଳ ଏବଂ ସେଗୁଡ଼ିକ୍ ତୁରନ୍ତ ତ୍ୟାଗ କରାଯିବା ଉଚିତ୍ । ଏହାକୁ ସ୍ୱୀକାର କରାଯିବା ଉଚିତ୍ ନୁହେଁ ।

କର୍ମ କରିବା ପାଇଁ ଅନ୍ୟ ଦିଗଟି ହେଲା, ସ୍ଥାନ ଓ କାଳ, ଜ୍ଞାନର ଉପଲବ୍ଧି । ଯେକୌଣସି କର୍ମ କରିବା ପୂର୍ବରୁ ନିଜର ଶକ୍ତି କେତେ ତାହା ଆକଳନ କରିବା ବିଧେୟ । ଦୃଢ଼ ମନବଳସମ୍ପନ୍ନ ଦୃଢ଼ ବ୍ୟକ୍ତିଙ୍କ ପାଇଁ କୌଣସି କର୍ମ କରିବା ଅସମ୍ଭବ ହୁଏ ନାହିଁ । ସ୍ୱଶକ୍ତି ପରିଚୟ ବିନା ଯିଏ କୌଣସି କର୍ମକୁ ଆପଣାଇ ନିଏ ସେ ମଧ୍ୟଭାଗରେ କର୍ମ ତ୍ୟାଗ କରିବାକୁ ବାଧ୍ୟ ହୋଇଥାଏ । ଏତଦ୍‌ଦ୍ୱାରା ତାର ଅବନତି ହୋଇଥାଏ । ଏଣୁ ମନୁଷ୍ୟ ଇଚ୍ଛିତ କର୍ମକୁ ନିଜର ଶକ୍ତି ବିରୋଧି ଶକ୍ତି ଏବଂ ସାହାଯ୍ୟକାରୀଙ୍କ ଶକ୍ତିକୁ ଆକଳନ କରି କୌଣସି କର୍ମରେ ପ୍ରବୃତ୍ତ ହେବା ଉଚିତ୍ ।

ଦାନ ସତ୍‌କର୍ମ ଇତ୍ୟାଦି କରିବାର ସୀମା କେତେଦୂର ବ୍ୟକ୍ତିର ଅଛି ସେ ସମ୍ବନ୍ଧୀୟ ଜ୍ଞାନ ରହିବା ଦରକାର । କୌଣସି କର୍ମ ଯେତେ ମହତ୍ତ୍ୱପୂର୍ଣ୍ଣ ଅଥବା ଶ୍ରେଷ୍ଠ ହେଲେ ମଧ୍ୟ ମର୍ଯ୍ୟାଦିତ ହେବା ଉଚିତ୍ ବୋଲି ମହାକବିଙ୍କର ମତ । ନିଜ ଧନ ସମ୍ପତ୍ତିର ସୀମାକୁ ବିଚାର ନ କରି ଅଧିକ ଦାନୀ ହେବା ପାଇଁ ଚେଷ୍ଟା କଲେ ଦୁଃଖ ହିଁ ସାର ହୋଇଥାଏ । ତେଣୁ ଦାନ ଉଚିତ୍ ମାତ୍ରାରେ ନିଜ ସୀମା ଭିତରେ କରିବା ବିଧେୟ । ନିଜ ଧନ ସମ୍ପତ୍ତିର ଆକଳନ ନ କରି ଦାନ ଦ୍ୱାରା ରିକ୍ତ ହୋଇ

ଗଲେ ଧନସମ୍ପନ୍ନ ଜୀବନ ଅବଶେଷରେ ବିନାଶମୁଖୀ ହୋଇଥାଏ । ଯଦି କେହି ଆଘାତ ପ୍ରାପ୍ତ ଶାଖା ଉପରେ ଅଦେଶ ପୂର୍ବକ ଚଢ଼ି ଆଗକୁ ଯିବାକୁ ଚେଷ୍ଟା କରେ ତାର ପ୍ରାଣ ବିନାଶ ନିଶ୍ଚୟ ହୁଏ ।

ଆପଣାର ସୀମା ଓ ଶକ୍ତି ବିଷୟରେ ସମ୍ୟକ୍ ପରିଚୟ ପ୍ରାପ୍ତ କରିବା ଉପରାନ୍ତ କାଳ ଅଥବା ସମୟ ସ୍ଥିର କରିବା ସବୁଠୁଁ ମହତ୍ତ୍ୱପୂର୍ଣ୍ଣ ପଦକ୍ଷେପ । ଆବଶ୍ୟକ ସାଧନ ସଂଗ୍ରହ କରି ସମୟାନୁସାରେ କୌଣସି କର୍ମ ଆରମ୍ଭ କଲେ ଅସମ୍ଭବ ସମ୍ଭବ ହୋଇଥାଏ । ଏହି ପ୍ରକାର କାର୍ଯ୍ୟାରମ୍ଭ କରିବା ବ୍ୟକ୍ତି ସଂସାରକୁ ବଶୀଭୂତ କରିଥାଏ । ଯୁଦ୍ଧ ଓ ଶାନ୍ତି ଉଭୟ ସମୟରେ ବଲ୍ଲୁବର ଉଚିତ୍ ସମୟର ପ୍ରତୀକ୍ଷା କରିବାକୁ ପରାମର୍ଶ ଦେଇଛନ୍ତି । ଅନୁକୂଳ ସମୟ ଆସିଲେ ଅସମ୍ଭବ କାର୍ଯ୍ୟ ମଧ୍ୟ ସମ୍ଭବ ହୋଇଥାଏ । ପ୍ରତିକୂଳ ସମୟରେ ବିରୋଧି ସମକ୍ଷରେ ବିନୀତ ହୋଇଯିବା ଉଚିତ୍, କାରଣ ସମୟ ପ୍ରବଳ ବଳବାନ୍ । ଦିବସରେ ଶକ୍ତିଶାଳୀ ଉଲୁକ ଉପରେ ଦୁର୍ବଳ କାକଟିଏ ମଧ୍ୟ ଆକ୍ରମଣ କରିଥାଏ । ଶତ୍ରୁ ଉପରେ ବିଜୟ ପ୍ରାପ୍ତ କରିବା ଇଚ୍ଛୁକ ବ୍ୟକ୍ତି ତଦନୁକୂଳ ସମୟର ପ୍ରତୀକ୍ଷା କରିଥାଏ । ସଂଗ୍ରାମରେ ବିଜୟ ଇଚ୍ଛୁକ ବ୍ୟକ୍ତି ଆବଶ୍ୟକତା ଅନୁସାରେ ନିଜେ ହାରିଗଲା ଭଳି ପଛକୁ ହଟି ଆସି ଅଭିନୟ କରିଥାଏ, ଯେପରି ମେଣ୍ଢା ଶତ୍ରୁ ସହିତ ଲଢ଼େଇ କରିବା ପୂର୍ବରୁ ନିଜ ପାଦକୁ ପଛକୁ ଘୁଞ୍ଚାଇ ଅପେକ୍ଷା କରି ରହିଥାଏ । ଶତ୍ରୁର ଦୋଷ ଦୁର୍ବଳତା ଦେଖି ବୁଦ୍ଧିମାନ ତୁରନ୍ତ ସେଠାରେ ନିଜର କ୍ରୋଧ ବ୍ୟକ୍ତ କରେ ନାହିଁ । ସେ କ୍ରୋଧ ଜ୍ୱାଳାକୁ ଉଚିତ୍ ସମୟ ଆସିବା ପର୍ଯ୍ୟନ୍ତ ମନରେ ସଞ୍ଚୟ କରି ରଖେ । ତେଣୁ ପ୍ରତୀକ୍ଷା ସମୟରେ ହଂସ ସଦୃଶ ଶାନ୍ତ ରୁହ । ଅବସର ଆସିଲେ ଶତ୍ରୁ ସହିତ ଆକ୍ରମଣ କରି ବିଜୟ ଲାଭ କର । କର୍ମ କରିବା ପାଇଁ ସ୍ଥାନର ନିର୍ବାଚନ ପ୍ରମୁଖ ମହତ୍ତ୍ୱପୂର୍ଣ୍ଣ । ବିଶେଷତଃ ଯୁଦ୍ଧ ନିମିତ୍ତ ବିଶେଷ ପ୍ରୟୋଜନ ପୂର୍ଣ୍ଣରୂପେ ବିଚାର କରି ଉଚିତ ସ୍ଥାନ ନିର୍ଣ୍ଣୟ କଲେ ନିର୍ଭୟତା ଆସିଥାଏ ଏବଂ ଅନ୍ୟ କାହାର ସହାୟତା ଆବଶ୍ୟକ ହୁଏ ନାହିଁ । ଯୁଦ୍ଧରେ ସ୍ଥଳ ନିର୍ବାଚନ ଯୁଦ୍ଧ ନିର୍ଣ୍ଣାୟକ ପ୍ରଶ୍ନ ହୋଇଥାଏ । ଗଭୀର ଜଳରେ କୁମ୍ଭୀର ଅନ୍ୟ ଜଳ ଜୀବ ଉପରେ ବିଜୟ ହାସଲ କରିଥାଏ, କିନ୍ତୁ ସେ ଜଳ ଉପରକୁ ଏବଂ ସ୍ଥଳ ଭାଗକୁ ଆସିଗଲେ ଅନ୍ୟ ସାଧାରଣ ଜୀବ ତାକୁ ସହଜରେ ଆକ୍ରମଣ କରିଥାନ୍ତି । ବଡ଼ ବଡ଼ ଚକ ଲାଗିଥିବା ରଥ ସମୁଦ୍ର ଭିତରେ ଚାଲିପାରେ

ନାହିଁ; ସେପରି ସମୁଦ୍ରଗାମୀ ଜଳଯାନ ମଧ୍ୟ ଭୂମି ଉପରେ ଚାଲିପାରେ ନାହିଁ। ନିର୍ଭୟ ହସ୍ତୀ ଯଦି କର୍ଦ୍ଦମାକ୍ତ ଗର୍ତ୍ତରେ ପଡ଼ିଯାଇ ଅବଶ ହୋଇଯାଏ, ଯେ କେହି ମଧ ତାକୁ ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇଯାଏ। ଏଣୁ ଏହା ସ୍ପଷ୍ଟ ଯେ କାର୍ଯ୍ୟ ପୂର୍ତ୍ତି ପାଇଁ ଉଚିତ ସ୍ଥଳ ନିର୍ଣ୍ଣୟ ବିନା କୌଣସି କର୍ମରେ ଆଗେଇବା ଭୁଲ୍ ବୋଲି ପ୍ରମାଣିତ ହୋଇଥାଏ। ଏଣୁ ମହାକବି କର୍ମର ଜଟିଳ ପ୍ରଶ୍ନକୁ ବିଶ୍ଳେଷଣ କରି ସର୍ବଜନ ସୁଲଭ ସମାଧାନ ଦେବାକୁ ଚେଷ୍ଟା କରିଛନ୍ତି।

## ସାମାଜିକ ଜୀବନର ଦୁର୍ବଳ ଦିଗ :

ସୁଖ ଓ ଦୁଃଖ କ୍ରମରେ ଆସିଥାଏ, ଠିକ୍ ସେପରି ମାନବ ସ୍ୱଭାବର ବିଭିନ୍ନତା କାରଣରୁ ଅଥବା ସାମାଜିକ ସଙ୍ଗଠନର ଦୁର୍ବଳତା କାରଣରୁ ସମାଜରେ ଦୁର୍ବଳ ଚରିତ୍ର ବ୍ୟକ୍ତି ସର୍ବଦା ଦେଖାଯାଆନ୍ତି। ମୂଢ଼, ଅହଙ୍କାର ଯୁକ୍ତ, ନୀଚ ବୁଦ୍ଧିସମ୍ପନ୍ନ ମନୁଷ୍ୟ ଯୋଗୁଁ ଦରିଦ୍ରତା, ଭୀକ୍ଷା ଆଦି ଭୟଙ୍କର ସାମାଜିକ ସ୍ଥିତି ଉତ୍ପନ୍ନ ହୁଏ।

**ମୂଢ଼ତା** - ଏହି ଲକ୍ଷଣରେ ନିର୍ଲଜତା, ନିର୍ଦ୍ଦୟ, ଅମେଳାପ ମନମୁଖୀ ଭାବ ଦୃଷ୍ଟି ଗୋଚର ହୁଏ। ମୂଢ଼ ବ୍ୟକ୍ତି ପରିଣାମତଃ ଲାଭପ୍ରଦ ଘଟଣାକୁ ତ୍ୟାଗ କରି ହାନିପ୍ରଦକୁ ଗ୍ରହଣ କରେ। ଅସାଧାରଣ କର୍ମକୁ ସେ ବିଶେଷ ଅଭିଳାଷ ପୋଷଣ କରେ। ସେ ଯେ କୌଣସି କର୍ମ ଆରମ୍ଭ କରେ ତାହା ଅପୂର୍ଣ୍ଣ ହୁଏ, ସେଥିପାଇଁ ସେ ଦଣ୍ଡ ଭୋଗ କରେ। ଅତୁଳ ସମ୍ପତ୍ତି ମୂଢ଼ ବ୍ୟକ୍ତିର ଅନ୍ୟ କେହି ଭୋଗ କରି ଲାଭାନ୍ୱିତ ହୁଏ। ସେ ଭୋକ ଉପାସରେ କାଳ ଅତିବାହିତ କରେ। ଏହି ଭଳି ଲୋକ ସହିତ ବନ୍ଧୁତା ଅତ୍ୟନ୍ତ ମଧୁର ହୋଇଥାଏ, କାରଣ ଏହି ବନ୍ଧୁତ୍ୱ ନଷ୍ଟ ହୋଇଗଲେ ମଧ ଦୁଃଖ ଲାଗେ ନାହିଁ। ବୁଦ୍ଧିମାନ ବ୍ୟକ୍ତିମାନଙ୍କ ମଧ୍ୟରେ ମୂଢ଼ ବ୍ୟକ୍ତି ପ୍ରବେଶ କଲେ ମଳଯୁକ୍ତ ପାଦ ପରିଷ୍କାର ନ କରି ଶଯ୍ୟା ଧରିବା ସମାନ।

ମୂଢ଼ ବ୍ୟକ୍ତି ସଦୃଶ ଅହଙ୍କାରୀ ବ୍ୟକ୍ତି ସମାଜର ଏକ ବଡ଼ ଦୋଷ ବୋଲି ସ୍ୱୀକାର କରାଯାଇଥାଏ। "ମୁଁ ବଡ଼ ବୁଦ୍ଧିମାନ" ମୂର୍ଖ ବ୍ୟକ୍ତି ହିଁ କହିଥାଏ। ସେ ବଡ଼ ରହସ୍ୟ ପୂର୍ଣ୍ଣ ବିଷୟକୁ ପ୍ରକାଶ କରିଦେଇଥାଏ, ବିନା ଅଧ୍ୟୟନରେ ସେ ପଣ୍ଡିତ ଭଳି ନିଜ ଅଧିକାର ସାବ୍ୟସ୍ତ କରେ। ନିଜେ ସବୁ କିଛି ଜାଣିଛି, ଅନ୍ୟ କଥାକୁ କର୍ଣ୍ଣପାତ କରେ ନାହିଁ, ଏହା ହେଉଛି ବୁଦ୍ଧିହୀନତାର ସ୍ୱର। ମୂଢ଼ ବ୍ୟକ୍ତି ନିଜେ କିଛି ତ ଜାଣେ

ନାହିଁ, କେହି ବୁଝାଇଲେ ମଧ୍ୟ ତାଙ୍କ କଥାକୁ ଏଡ଼େଇ ଦେଇ ନିଜ ବୁଦ୍ଧିରେ ମନମୁଖି କାମ କରେ । ମାନସିକ ବିକୃତ ବୋଲି ପ୍ରତ୍ୟକ୍ଷ ଦେଖାଯାଏ ।

ନୀଚତା - ମୂଢ଼ ବ୍ୟକ୍ତି ନିଜର ମୂଢ଼ତା ଯୋଗୁଁ କ୍ଷମଣୀୟ, କିନ୍ତୁ ନୀଚବ୍ୟକ୍ତି ନିଜର ବ୍ୟକ୍ତିଗତ ସ୍ୱାର୍ଥ ଏବଂ ଅନ୍ତର୍ନିହିତ ଦୋଷ ଯୋଗୁଁ ସମାଜର ପ୍ରବଳ କ୍ଷତି ପହଞ୍ଚାଏ । ସେ ସାଧାରଣ ମନୁଷ୍ୟ ଭଳି ଚଳପ୍ରଚଳ ହେଲେ ମଧ୍ୟ ମନରେ ମନ୍ଦ ଉଦ୍ଦେଶ୍ୟ କାରଣରୁ ସେ ନୀଚ ଅଟେ । କେହି ସୁନ୍ଦର ବସ୍ତୁ ପିନ୍ଧିଲେ କିମ୍ବା ଭୋଜନ କଲେ ତାର ଅର୍ନ୍ତଦାହ ହୁଏ । ନିଜର ଢ଼ୋଲ ସେ ନିଜେ ହିଁ ପିଟେ; ନିଜକୁ ସବୁଠୁଁ ବ ବଡ ବୋଲି ଗର୍ବ ଅନୁଭବ କରେ । କୌଣସି ଗୁପ୍ତ କଥା ଶୁଣିଲେ ଚାରିଆଡ଼େ ପ୍ରଘଟ କରିଦିଏ । ସେ ବିପତ୍ତି ସମୟରେ ଶୀଘ୍ର ବ୍ୟତିବ୍ୟସ୍ତ ହୋଇପଡେ, ତା'ର ସଦାଚରଣରେ ବଡ଼ ଭୟ ଥାଏ । ଯାହାଠାରେ କୌଣସି ଲାଭ ନଥାଏ, ତା' ପାଖ ମାଡ଼େ ନାହିଁ କିମ୍ବା କିଛି ସାହାଯ୍ୟ କରେ ନାହିଁ । ବୁଦ୍ଧିମାନ ଭବିଷ୍ୟତରେ କ'ଣ ଘଟିବ ସଙ୍କେତରୁ ହିଁ ଜାଣିପାରେ, କିନ୍ତୁ ନୀଚ ବ୍ୟକ୍ତି ଆଗାମୀ ଦୃଶ୍ୟର ଭୟାବହ ଦର୍ଶନ କଲେ ମଧ୍ୟ ସେ ସ୍ୱାର୍ଥରେ ଅନ୍ଧ ହୋଇ ଅନ୍ୟ ବିଷୟରେ ମୋଟେ ଚିନ୍ତା ନ କରି ନିଜେ ଭଲରେ ଅଛି ସର୍ବଦା ଭାବୁଥାଏ ।

## ସମାଜ ଉନ୍ନତିରେ ପ୍ରତିବନ୍ଧକ : ପ୍ରୟୋଜନ ଠାରୁ ଅଧିକ ସମ୍ପତ୍ତି

ମହାକବି ସମ୍ପତ୍ତି ସଂଗ୍ରହକୁ ସାମାଜିକ ଦୋଷ ଭାବେ ବର୍ଣ୍ଣନ କରିଛନ୍ତି । ସାମାଜିକ ଭେଦଭାବ ମୂଳରେ କର୍ମର ପ୍ରମାଦ ଅଛି, ଏହା ସ୍ୱୀକାର କରି ଅନାବଶ୍ୟକ ସମ୍ପତ୍ତି ସଂଗ୍ରହକୁ ଏକ ଅଶୁଭ ପ୍ରବୃତ୍ତି ଭାବେ ଗ୍ରହଣ କରିଛନ୍ତି । ଯଶ, ଖ୍ୟାତି ପ୍ରତି ଅନିଚ୍ଛା ପ୍ରକାଶ କରି ଖାଲି ଧନ ସଂଗ୍ରହରେ ମଗ୍ନ ହେବା ବ୍ୟକ୍ତି ପୃଥିବୀର ଭାର ସ୍ୱରୂପ ଅଟେ । ଯିଏ କିଛି ଦିଏ ନାହିଁ, କିଛି ଭୋଗ କରେ ନାହିଁ, ତା' ନିକଟରେ ଅମାପ ସମ୍ପତ୍ତି ଠୁଳ ହେଲେ ମଧ୍ୟ ସବୁ ବ୍ୟର୍ଥ । ବିଶାଳ ସମ୍ପତ୍ତି ବ୍ୟାଧି ସ୍ୱରୂପ ଅଟେ । ଅପୂର୍ବ ସୌନ୍ଦର୍ଯ୍ୟଯୁକ୍ତ ରମଣୀ ନିରନ୍ତର ଏକାକୀ ରହିଲେ ଯେପରି ଯୌବନ ପ୍ରତି ମୂହୁର୍ତ୍ତରେ ନଷ୍ଟ କରି ବୃଦ୍ଧା ହୋଇଯାଏ, ଠିକ୍ ନିର୍ଦ୍ଧନକୁ ଧନ ଦାନନ କରି କୃପଣର ସମ୍ପତ୍ତିର ସ୍ଥିତି ଏହିପରି ହୋଇଥାଏ । ସହର ମଧ୍ୟରେ ବିଷ ବୃକ୍ଷଟିଏ ରଖାଇଲେ ଯେପରି ସମସ୍ତଙ୍କ ଅହିତ ହୁଏ, ଠିକ୍ ସେପରି ଅପ୍ରିୟ ବ୍ୟକ୍ତିର ସମ୍ପତ୍ତି କାହାର ସହାୟତାରେ

ଆସେ ନାହିଁ । ଏହିଭଳି କୃପଣ ବ୍ୟକ୍ତିର ମାନସିକ ଦୃଷ୍ଟି ଅତୀବ ସୀମିତ ହୋଇଥାଏ, ସେ ଅନ୍ୟକୁ ପ୍ରେମ କରିବା ଛାଡ଼ି ଦେଇ ନିଜ ସମ୍ପତ୍ତିକୁ କେବଳ ଭଲପାଇ ସ୍ୱୟଂକଷ୍ଟ ଭୋଗ କରେ । ସେ ଧର୍ମ ମାର୍ଗକୁ କଦାପି ଅନୁସରଣ କରି ନଥାଏ । ମହାକବିଙ୍କ ମତ ଯେ ଏହିଭଳି ବ୍ୟକ୍ତିର ସମ୍ପତ୍ତି ଅନ୍ୟ କେହି ଉପଭୋଗ କରେନାହିଁ । ଏତେ ସମ୍ପତ୍ତି ସଂଗ୍ରହ କରି ନିଜେ କିଛି ଭୋଗ ନ କରି କିମ୍ବା ଅନ୍ୟ କାହାକୁ ଟିକେ ବିତରଣ ନ କରି ମନୁଷ୍ୟ ଏପରି ନିରର୍ଥକ ଜୀବନ ଧାରଣ କରିବାର ଲାଭ କଣ ? ତଥାପି କେତେକ ଲୋକ ଭାବନ୍ତି ସଂପତ୍ତି ଦ୍ୱାରା ସବୁ କିଛି ସମ୍ଭବ, ତେଣୁ ସମ୍ପତ୍ତି ସଂଗ୍ରହରେ ସତତ ନିଜକୁ ହଜାଇ ଦେଇ ବିଚିତ୍ର ମାଦକତା ଅନୁଭବ କରନ୍ତି ଏବଂ ସର୍ବଦା ସନ୍ତୁଷ୍ଟ ରହନ୍ତି । ବଲ୍ଲୁବରଙ୍କ ମତ ଅନୁସାରେ ଏହି ପ୍ରକାର ଲୋକେ ଦେହ ତ୍ୟାଗ ପରେ ତୁଚ୍ଛ ଜନ୍ମ ପ୍ରାପ୍ତ ହୁଅନ୍ତି ।

ଦରିଦ୍ର୍ୟ - ଦାରିଦ୍ର୍ୟ ମନୁଷ୍ୟକୁ ଧରାତଳରେ କଠିନ ପରିସ୍ଥିତିରେ ଠିଆ କରିଦେଇଥାଏ । ଏହି ରୋଗ ଏକୁଟିଆ ଆସେ ନାହିଁ, ଅନେକ ପ୍ରକାର କଠିନ ସ୍ଥିତିକୁ ସାଥିରେ ନେଇ ସ୍ୱୟଂ ଉପସ୍ଥିତ ହୁଏ । ଏ ସଂସାରରେ ଦାରିଦ୍ର୍ୟ ସମାନ କୌଣସି ଦୁଃଖପ୍ରଦ ଅବସ୍ଥା କ'ଣ ଥାଇପାରେ ? ଦରିଦ୍ର୍ୟ ଦ୍ୱାରା ଏହି ଜନ୍ମ ତଥା ଭବିଷ୍ୟତ ଜନ୍ମର ସମସ୍ତ ସୁଖ ଲୁପ୍ତ ହୋଇଯାଏ । ଦାରିଦ୍ର୍ୟ ଲୋକ କେବେ ଶାନ୍ତିରେ ଆଖି ବନ୍ଦ କରି ଶୋଇପାରେ ନାହିଁ । ଦରିଦ୍ର ପାଇଁ ପ୍ରତ୍ୟେକ ଦିନ ଏକ ଭୟଙ୍କର ବିପତ୍ତି ସମାନ । ଜଣେ ଦରିଦ୍ର ଲୋକର ଦୁଃଖ କାହାଣୀ ନିକଟରେ ଶ୍ରେଷ୍ଠ ବିଷୟର ବିଶିଷ୍ଟ ଚିନ୍ତନ ନିଷ୍ପ୍ରଭ ହୋଇଯାଏ । ଏପରିକି ଦରିଦ୍ର ପୁଅ ପ୍ରତି ମଧ୍ୟ ମାଆର ବ୍ୟବହାର ପରିବର୍ତ୍ତିତ ହୋଇଯାଇଥାଏ । ଦରିଦ୍ର ଯଦି ଇଚ୍ଛା କରେ ସେ ସନ୍ନ୍ୟାସ ଗ୍ରହଣ କରିବ, ତେବେ ଶୁଖିଲା ରୁଟି ଖଣ୍ଡେ, ଲୁଣ ଟିକେ ଅଭାବରେ ସନ୍ନ୍ୟାସୀ କଣ ବଞ୍ଚିପାରିବ ?

ଗ୍ରହଣ / ଭିକ୍ଷା - ଦାରିଦ୍ର୍ୟ ଫଳ ସ୍ୱରୂପ ଭିକ୍ଷାର ସ୍ଥିତି ଉତ୍ପନ୍ନ ହୋଇଥାଏ । ମୁକ୍ତ ହୃଦୟ, ଉଦାର ବ୍ୟକ୍ତି ସମ୍ମୁଖରେ ଠିଆ ହୋଇ ଭିକ୍ଷା ମାଗିଲେ ଆନନ୍ଦ ମିଳେ । ସଂସାରରେ ଏ ଧରଣର ମନୁଷ୍ୟ ବିଦ୍ୟମାନ ଅଛନ୍ତି, ତେଣୁ କିଛି ଲୋକ ଭିକ୍ଷା ବୃତ୍ତିରେ ବ୍ୟାପୃତ ମଧ୍ୟ ଅଛନ୍ତି । ଭିକ୍ଷୁକକୁ ଘୃଣା ନ କରିବା ବ୍ୟକ୍ତିଙ୍କୁ ଦେଖିଲେ ତା'ର ହୃଦୟରେ ଆନନ୍ଦ ଭରିଯାଏ । ବିନା ଦୁଃଖରେ ଯଦି ଦାନୀ ବ୍ୟକ୍ତି କୌଣସି

ଦାନ ବସ୍ତୁ ଦେଇଥାନ୍ତି ତଦ୍ୱାରା ସେ ଆନନ୍ଦ ଅନୁଭବ କରନ୍ତି । ଜ୍ଞାନୀ ବ୍ୟକ୍ତି ଦାନ ଗ୍ରହଣ କରିବାର ଉପଯୁକ୍ତ ପାତ୍ର ନିର୍ବାଚନ କରିବା ଉଚିତ୍ । ଦାନ ନ ମିଳିଲେ ମଧ୍ୟ ଯାଚକ କୌଣସି ପ୍ରକାର କ୍ରୋଧ ଗ୍ରହଣ କରିବା ଉଚିତ୍ ନୁହେଁ ।

ବଲ୍ଲୁବର ବାସ୍ତବରେ ଭିକ୍ଷାକୁ ହେୟ ଓ ତ୍ୟାଜ୍ୟ ବୋଲି ସ୍ୱୀକାର କରିଛନ୍ତି । ତଥାପି ସାମାଜିକ ଜୀବନରେ ଯାହା ସତ୍ୟ ତାହା ମିଥ୍ୟା ବା କିପରି ହେବ ? ପ୍ରକୃତରେ ଭିକ୍ଷା ହେଉଛି ମନୁଷ୍ୟର ଅନ୍ତିମ ସ୍ଥିତି ଏବଂ ଏହା ଅଧିକ ଦୁଃଖପ୍ରଦ । ସେ ପରିଶ୍ରମର ମହତ୍ତ୍ୱକୁ ଉପସ୍ଥାପନା କରନ୍ତି- ଶୁଖିଲା ରୁଟି ଖଣ୍ଡେ ପଛେ ହେଉ ସ୍ୱଅର୍ଜିତ ଭୋଜନଠାରୁ ଆଉ ଅଧିକ ମଧୁର କିଛି ନାହିଁ । ଭିକ୍ଷାର ଭୟଙ୍କରତା ସମ୍ବନ୍ଧରେ ନିଜର ମତ ବ୍ୟକ୍ତ କରନ୍ତି ଯେ ଯଦି ସୃଷ୍ଟିକର୍ତ୍ତା ଏହା ଚାହୁଁଛନ୍ତି କି ଜଣେ ବ୍ୟକ୍ତି ଭିକ୍ଷା ମାଗି ଜୀବନରେ ବାଟବଣା ହୋଇ ଶେଷରେ ନାଶ ହେଉ । ତାଙ୍କ ବିଚାରରେ ଭିକ୍ଷା ବୃତ୍ତିଦ୍ୱାରା ପରିଣାମ ସ୍ୱରୂପ ମଣିଷ ସମ୍ଭବତଃ, ମାନସିକ କ୍ଳେଶ ଓ ନୈତିକ ଦୃଷ୍ଟିରୁ ଆପଣକୁ ତିକ୍ତ ଅନୁଭବ କରୁ । ଦାରିଦ୍ର୍ୟ ଦୁଃଖକୁ ଭିକ୍ଷା ଦ୍ୱାରା ଦୂର କରିବା ଅଜ୍ଞାନତାରୁ ବଳି ଅଜ୍ଞାନ ଅଟେ । ଜୀବନ ନିର୍ବାହ ପାଇଁ ଭିକ୍ଷା ବୃତ୍ତି ତ୍ୟାଗ କରିବା ସଦ୍‌ଗୁଣ ପୃଥ୍ୱୀର ବିଶାଳତାଠାରୁ ମଧ୍ୟ ଶ୍ରେଷ୍ଠ । ଦାରିଦ୍ର୍ୟ ନିମିତ୍ତ ଭିକ୍ଷା ବୃତ୍ତି କେବେହେଁ ଠିକ୍ ନୁହେଁ, ଅନ୍ୟ ଏକ ସ୍ଥିତି ହେଉଛି ଯଦି କେହି ଭିକ୍ଷା ମାଗେ ତେବେ ତାଙ୍କୁ ଦାନ ଦେବା ଉଚିତ । 'ଭିକ୍ଷା' ନାମକ ଆଶ୍ରୟହୀନ ନାବ 'ନିଷେଧ' ନାମକ ଚଟାଣ ଉପରେ ଧକ୍କା ଖାଇକି ଲେଉଟି ପଡ଼ିବ । 'ଭିକ୍ଷା' ବିଷୟ ବିଚାର କଲେ ହୃଦୟ ଦ୍ରବିଭୂତ ହୋଇଯାଏ ଏବଂ 'ନିଷେଧ' କଥା ବିଚାର ବେଳେ ହୃଦୟ ବିଦୀର୍ଣ୍ଣ ହୋଇଯାଏ । ଯାଚକକୁ ନାହିଁ କରିଦେବା ମାତ୍ରେ ସତେ ଯେପରି ତା'ର ପ୍ରାଣ ବାହାରି ଯାଏ । କାରଣ ଜିନିଷ ପାଖରେ ଥାଇ ମନା କରି ଦେଲେ ପ୍ରାଣ କିପରି ଲୁଚି ରହିପାରେ ?

କବି 'ଅର୍ଥ' ସମ୍ବନ୍ଧରେ ଶାସ୍ତ୍ରୀୟ ଓ ପରମ୍ପରାଗତ ଭାବେ ଚର୍ଚ୍ଚା କରିଛନ୍ତି । ଆଧୁନିକ ବୈଜ୍ଞାନିକ ଯୁଗରେ ମଧ୍ୟ କବିଙ୍କ ଚିନ୍ତନ ଅସଂଦିଗ୍ଧ ହୋଇ ରହିଛି । ତାଙ୍କ ଆଦର୍ଶ ପ୍ରତିପାଦନ ମାନବ କଲ୍ୟାଣ ନିମନ୍ତେ ଉଦ୍ଦିଷ୍ଟ ।

**ପ୍ରଶାସନ ଅଧିକାରୀ** - କୃଷି ପ୍ରଧାନ ଅର୍ଥ ବ୍ୟବସ୍ଥା କାରଣରୁ ମହାକବି ବଲ୍ଲୁବର ଜଳ ଏବଂ ଉପ ଜଳ ସ୍ରୋତ, ବର୍ଷା, ନଦୀ ଇତ୍ୟାଦି ଉପରେ ବିଶେଷ ଗୁରୁତ୍ୱ ଦେଇଛନ୍ତି ।ପୁନଶ୍ଚ ଅକ୍ଷୟ ଉପଜ, ଯୋଗ୍ୟ ବିଦ୍ୱାନ୍, ହିତକାରୀ, ଧନାଢ୍ୟ ବ୍ୟକ୍ତି ଦେଶ ପାଇଁ ଯେ ନିଶ୍ଚିତ ବଳ ଏହା ଉଲ୍ଲେଖ କରିଛନ୍ତି । ଦେଶର ବିଶାଳ କୃଷି କ୍ଷେତ୍ର, ପ୍ରଚୁର ଜଳ ପ୍ରବାହ ଯଥାନୁକୂଳ ପର୍ବତ ଶ୍ରେଣୀ ଉତ୍ପାଦନର ବିଶେଷ ଅଂଶ ଭାବେ ସ୍ୱୀକାର କରିଛନ୍ତି । ସୈନ୍ୟ, ପ୍ରଜା, ଧନ, ଅମାତ୍ୟ ( ପ୍ରଶାସନ ଅଧିକାରୀ) ଦେଶର ଶକ୍ତି ବୋଲି ଉଲ୍ଲେଖ କରିଛନ୍ତି । ସଂଘୀୟ ବ୍ୟବସ୍ଥାରେ ବିରୋଧୀ ଶକ୍ତି, ଅନ୍ତଃ କଳହ ରାଜା (ମୁଖ୍ୟ ନେତା)ଙ୍କ ପାଇଁ ଦୁଃଖପ୍ରଦ କାରଣ ନିମିତ୍ତ ସତର୍କତା ନିତାନ୍ତ ଆବଶ୍ୟକ ବୋଲି ସୂଚନା ଦେଇଛନ୍ତି । ରାଜା (ନେତା) ସର୍ବଦା ନିର୍ଭୟ, ବୁଦ୍ଧିମାନ, ଉତ୍ସାହୀ, ସତର୍କ ପ୍ରବଣ, ମିଷ୍ଟଭାଷୀ, ଦୟାଶୀଳ, ଧର୍ମନୀତି ପରାୟଣ ହେବା ଉଚିତ ବୋଲି ଉଲ୍ଲେଖ କରିଛନ୍ତି । ଏତଦ୍‌ବ୍ୟତୀତ ମନ୍ତ୍ରୀ ଏବଂ ସଚିବମାନେ ସମୟାନୁକୂଳ କର୍ମ ଗ୍ରହଣ, ଦୀର୍ଘସୂତ୍ରୀତାବିହୀନ, ବିସ୍ମରଣ, ଦୃଢ଼ ସଂକଳ୍ପ, ଆବଶ୍ୟକାନୁସାରେ ସଂପର୍କ ଛେଦନ, ପୁନଃ ସଂପର୍କ ସ୍ଥାପନ ଇତ୍ୟାଦି ଗୁଣ ହାସଲ କରିବା ଦରକାର । ସେମାନେ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ ହୋଇ ଲୋକ ବ୍ୟବହାର ଅନୁଯାୟୀ ତୁରନ୍ତ ପଦକ୍ଷେପ ଗ୍ରହଣ କରିବା ଉଚିତ୍ । ନେତା ଓ ମନ୍ତ୍ରୀମାନଙ୍କ ସଚିବମାନେ ହେଲେ ନେତ୍ର ସଦୃଶ । ତେଣୁ ସେମାନେ ନ୍ୟାୟ ନିମିତ୍ତ ନିଜର ଦୃଢ଼ ମତ ବ୍ୟକ୍ତ କରିବା ଉଚିତ୍ । ବାଧା ଉପୁଜାଉଥିବା ମନ୍ତ୍ରୀ ଓ ସଚିବ ନେତା (ରାଜା) ପାଇଁ ସାତ କୋଟି ଶତ୍ରୁ ସଙ୍ଗେ ସମାନ ।

**ଦୂତ ଓ ଗୁପ୍ତଚର ମିତ୍ରତା** - ପରିସ୍ଥିତି ଓ ଆବଶ୍ୟକତା ଅନୁସାରେ 'ଦୂତକୁ' ବିଭିନ୍ନ ପ୍ରକାର ଅଧିକାରୀମାନଙ୍କୁ ସମ୍ପୃକ୍ତ କରାଯାଇଥାଏ । ଦୂତର କାର୍ଯ୍ୟ କରିବା ନିମିତ୍ତ ପ୍ରେମ, ବୁଦ୍ଧି ଓ ବିଚାରପୂର୍ଣ୍ଣ ବାକ୍‌ଶକ୍ତିର ଆବଶ୍ୟକତା ଦରକାର । ସ୍ନେହ ସମ୍ପନ୍ନତା, ରାଜାଙ୍କ ଇଚ୍ଛାନୁସାରେ କାର୍ଯ୍ୟ କରିବା, କର୍ତ୍ତବ୍ୟ ନିଷ୍ଠା, ଦେଶ ଓ କାଳକୁ ବିଚାର କରି ଧ୍ୟାନ ସହ ବାର୍ତ୍ତାଳାପ କରିବା, ବୁଦ୍ଧି, ବ୍ୟକ୍ତିତ୍ୱ ଓ ଗମ୍ଭୀର ଅଧ୍ୟୟନ କରିବା ଦୂତର ବିଶେଷ ଗୁଣ । ବିଜ୍ଞ, ନିର୍ଭୟ, ପ୍ରମାଦୀ ବକ୍ତା, (ପ୍ରତ୍ୟୁତ୍ପନ୍ନମତି), ନିର୍ଭୀକ ଦୂତ ରାଜାଙ୍କୁ (ନେତାଙ୍କୁ) ଶ୍ରୀସଂପନ୍ନ ସର୍ବଦା କରିଥାଏ । ଦୂତର ସମୟାନୁକୂଳ ମଧୁର ଭାଷଣ ଏବଂ ପ୍ରକାଣ୍ଡ ବିଦ୍ୱତାର ବିଶେଷ ଆବଶ୍ୟକତା ରହିଛି ।

**ଗୁପ୍ତଚର** - ରାଜ୍ୟ ଭିତରେ ଅଥବା ଅନ୍ୟ ରାଜ୍ୟରେ ହେଉଥିବା ଘଟଣାଗୁଡ଼ିକ ସୂଚନା ପ୍ରାପ୍ତ କରିବା ଗୁପ୍ତଚରର କାର୍ଯ୍ୟ । ଗୁପ୍ତଚର ଓ ନୀତିଶାସ୍ତ୍ର ବିଶେଷଜ୍ଞ ରାଜାଙ୍କ ଦୁଇଟି ନେତ୍ର ସଦୃଶ । ରାଜ୍ୟରେ ଘଟୁଥିବା; ଘଟିବାର ସମସ୍ତ ଘଟଣା ଜାଣିବା ତାର ପ୍ରଥମ କର୍ତ୍ତବ୍ୟ । ଗୁପ୍ତଚର କର୍ମଚାରୀ ଶତ୍ରୁ କିମ୍ବା ମିତ୍ର ସମସ୍ତଙ୍କ ବିଷୟରେ ଅନ୍ୱେଷଣ କରେ । ଭୟଙ୍କର ପରିସ୍ଥିତିରେ ମଧ ହୃଦୟସ୍ଥ ଭାବ କାହାରି ଆଗରେ ପ୍ରକାଶ କରେ ନାହିଁ । ରୂପ ପରିବର୍ତ୍ତନ, ଗୁପ୍ତ ବିଷୟ ଅନ୍ୱେଷଣରେ ସ୍ଥିର, ଜ୍ଞାତ ବିଷୟ ସମସ୍ତ ଲୁକ୍କାୟିତ କରିବା ଗୁପ୍ତଚରର ପ୍ରମୁଖ ଗୁଣ । କବି ବଲ୍ଲୁବର କହନ୍ତି, ଶାସନ ବ୍ୟବସ୍ଥା ଏପରି ହେବା ଦରକାର ଯାହାକି ଗୋଟିଏ ଗୁପ୍ତଚର ସମ୍ବନ୍ଧରେ ଅନ୍ୟ ଗୁପ୍ତଚର କିଛି ଜାଣିବାକୁ ପାଇବ ନାହିଁ । ଗୁପ୍ତଚରଦ୍ୱାରା ପ୍ରେରିତ ସମ୍ବାଦ ସମ୍ବନ୍ଧରେ ଯାଞ୍ଚ କରିବାର ଆବଶ୍ୟକତା ମଧ ନ ଥାଏ । ଗୁପ୍ତଚରମାନଙ୍କୁ ସର୍ବସାଧାରଣରେ ସମ୍ମାନିତ କରାଯାଏ ନାହିଁ ।

**ମିତ୍ରତା** - କୁରଳରେ ମିତ୍ରତାର ବର୍ଣ୍ଣନ ବିଷଦଭାବେ ହୋଇଛି । ରାଜା (ନେତା) କାହିଁକି ପ୍ରତ୍ୟେକ ମନୁଷ୍ୟ ସହିତ ମିତ୍ରତା ସ୍ଥାପନ କରିବ । ମିତ୍ରତା, ମିତ୍ରତା ବିବେଚନ, ଚିରପରିଚୟ, ନିକୃଷ୍ଟ ମିତ୍ରତା, ମିତ୍ରତାର ଉତ୍ତମ ନିର୍ବାଚନ । ଏପରି ପାଞ୍ଚପ୍ରକାର ଶୀର୍ଷକ ପଚାଶ ପଦ କାବ୍ୟରେ ଦର୍ଶିତ ହୋଇଛି । ମୈତ୍ରୀ ସମ୍ବନ୍ଧରେ ତାଙ୍କ ମତ ଯେ ବୁଦ୍ଧିମାନ ସହ ମିତ୍ରତା କଲେ ହୃଦୟ ଆନନ୍ଦିତ ହୁଏ, ସୁକର୍ମର ବୃଦ୍ଧି ଘଟେ, ତତ୍କାଳ ଦୁଃଖ ଦୂରୀଭୂତ ହୋଇଯାଏ । ନଚେତ୍ ମୂର୍ଖ ସହ ବନ୍ଧୁତା ମୃତ୍ୟୁ ସମାନ ଭୟଙ୍କର ହୋଇ ଉଠେ । ଶତ୍ରୁଙ୍କ ସହ ଯଦି ବନ୍ଧୁତ୍ୱ ଗଢ଼ି ଉଠେ ବିଷମ ପରିସ୍ଥିତିରେ ଜୀବନ ରକ୍ଷା ହୁଏ ।

ବୁଦ୍ଧିମାନ ସଜ୍ଜନ ସହ ମୈତ୍ରୀ ଅଧିକାଧିକ ସମ୍ପର୍କ ପ୍ରତିଷ୍ଠା ହୋଇ ବହୁ ଆନନ୍ଦପ୍ରଦ ହୋଇଥାଏ; ଯେପରି ଅଧିକାଧିକ ଅଧ୍ୟୟନ କାରଣରୁ କାବ୍ୟର ରସ ବୋଧନର ବୃଦ୍ଧି ଘଟେ । ଏପରି ମୈତ୍ରୀ ହୃଦୟରେ ଆନନ୍ଦ ପ୍ରଦାନଦାୟୀ ସ୍ରୋତ ଭାବେ ପରିଚିତ । ଯେ କୌଣସି କର୍ମର ଅନୁପମ ରକ୍ଷକ ହେଉଛି ମିତ୍ର । ଦୁଃଖ ଅଥବା ବିନାଶ କାଳରେ ମିତ୍ର ବିନାଶକାରୀ ତତ୍ତ୍ୱରୁ ଦୂରେଇ ଦେଇ ଶ୍ରେଷ୍ଠ ମାର୍ଗ ଦର୍ଶନ କରାଏ । ଯୋଡ଼ି ହୋଇଥିବା ବସ୍ତ୍ରକୁ ଖୋଲି ଦେଲେ ଯେପରି ଶରୀରକୁ ଆଚ୍ଛାଦିତ କରେ ତାଦୃଶ ବିପତ୍ତିର ତତ୍କାଳ ନିବାରଣ କେବଳ ମିତ୍ରତା କରେ । ତେଣୁ

ମୈତ୍ରୀ କେବଳ ଅନୁଭବର ବିଷୟ; କଥନର ନୁହେଁ । ମିତ୍ରତା ଅଧିକାରରେ ସ୍ୱାତନ୍ତ୍ର ଅଛି । ମିତ୍ର କେବଳ ମୁହଁରେ ହସ ଫୁଟାଇ ଖୁସି ବାଣ୍ଟେ ନାହିଁ, ସେ ସୀମା ଉଲଂଘନ କରି ବିପତ୍ତିରୁ ରକ୍ଷା ପାଇବା ପାଇଁ ଭର୍ତ୍ସନା ମଧ୍ୟ କରିଥାଏ । ତେଣୁ ମିତ୍ରତା ଲାଗି ମହତ୍ତ୍ୱପୂର୍ଣ୍ଣ ବ୍ୟକ୍ତିର ନିର୍ବାଚନ ଅତୀବ ସାବଧାନତା ସହ କରିବାକୁ ହୋଇଥାଏ । ବନ୍ଧୁର ଗୁଣ,ବଂଶ, ଦୋଷ, ସ୍ଥାୟୀ ବନ୍ଧୁତ୍ୱର ସ୍ୱଭାବ ଧ୍ୟାନ ରଖିବାକୁ ହେବ । ଯେଉଁ ବନ୍ଧୁ ବିଷମ ପରିସ୍ଥିତିରେ ସମ୍ପର୍କ ତ୍ୟାଗ କରେ ନାହିଁ, ଲୋକରୀତି ଅନୁସାରେ ନିଜର ବ୍ୟବହାର ପ୍ରଦର୍ଶନ କରେ ନାହିଁ, ସେଭଳି ନିର୍ମଳ ସ୍ୱଭାବ ବ୍ୟକ୍ତିଠାରୁ ବନ୍ଧୁତ୍ୱ ଆଶା କରାଯାଏ । ମିତ୍ର ସ୍ୱଭାବର ବିଶାଳତା ମାପ ଦଣ୍ଡ ହେଉଛି ବିପତ୍ତି କାଳ । ମୂର୍ଖ ବ୍ୟକ୍ତି ସହ ଯଦି କୌଣସି କାରଣରୁ ବନ୍ଧୁତା ହୁଏ, ତାକୁ କିଛି ଦେଇ ତା' ସହ ବନ୍ଧୁତା ତ୍ୟାଗ କରିବା ଲାଭପ୍ରଦ । ମିତ୍ରତା କାହା ସହିତ ହେଲାପରେ ତା'ର ଉଚିତ ଅନୁଚିତ ଅର୍ଥକୁ ସ୍ୱୀକାର କରିବାକୁ ହୋଇଥାଏ । ଯଦି ମିତ୍ରର ଅଧିକାର ପୂର୍ଣ୍ଣ କର୍ମ ସେ ସ୍ୱୀକାର ନ କରେ ତେବେ ଚିରାଚରିତ ମୈତ୍ରୀର ପ୍ରୟୋଜନ କଣ ?

ମହାକବି ତିରୁବଲ୍ଲୁବର ମିତ୍ରତାର ଆଦର୍ଶ ରୂପ ସହ ବ୍ୟାବହାରିକ ରୂପର ସମ୍ବନ୍ଧରେ ସଙ୍କେତ ଦେଇଛନ୍ତି । ନିକୃଷ୍ଟ ମିତ୍ରତା ପରୀକ୍ଷାର ସ୍ପଷ୍ଟ ହେଉଛି- ଗୃହର ଏକାନ୍ତରେ ମିତ୍ରତା ଭାବ ଦେଖାଇବା, ଜନ ଗହଳି ସଭାରେ ନିନ୍ଦା ପ୍ରକଟ କରିବା, ନିଜ ସ୍ୱାର୍ଥ ନିମିତ୍ତ ମୈତ୍ରୀ ସ୍ଥାପନ କରିବା ନଚେତ୍ ସମ୍ବନ୍ଧ ବିଚ୍ଛେଦ କରିବା, ସ୍ୱାର୍ଥ ନିମିତ୍ତ ପ୍ରାଥମିକତା ହାସଲ କରିବା, କଥନ ଏକ ପ୍ରକାର କାର୍ଯ୍ୟ ଅନ୍ୟପ୍ରକାର ପ୍ରଦର୍ଶନ ଇତ୍ୟାଦି । ସ୍ୱଲାଭ ସକାଶେ ଡରି ରହୁଥିବା ମିତ୍ର ଧନାଶ୍ରିତ ବେଶ୍ୟା କିମ୍ବା ଲୁଟେରା ସହ ସମାନ । ମୂଢ଼ ବ୍ୟକ୍ତି ସହ ମିତ୍ରତା କରିବା ଅପେକ୍ଷା ଜଣେ ବୁଦ୍ଧିମାନ ଶତ୍ରୁ କୋଟି ଗୁଣ ଲାଭପ୍ରଦ । ଅନ୍ତରରେ କଟୁ ଭରି ବ୍ୟବହାରରେ ହାସ୍ୟ ମୁଖ ପ୍ରଦର୍ଶନ କରିବା ମିତ୍ର ଅପେକ୍ଷା ଶତ୍ରୁର ଘୃଣା ଦଶ କୋଟି ଗୁଣରେ ଲାଭପ୍ରଦ । ଯୁଦ୍ଧ କ୍ଷେତ୍ରରେ ଯୋଦ୍ଧାକୁ ଭୂମିରେ ଫିଙ୍ଗି ଦେଇ ପଳାୟନ କରୁଥିବା ମୂଢ଼ ବ୍ୟକ୍ତି ଭଳି ଜଣେ ବ୍ୟକ୍ତି ସହିତ ମିତ୍ରତା କରିବା ଅପେକ୍ଷା ଏକାନ୍ତରେ ରହିବା ଶ୍ରେୟସ୍କର ।

ମିତ୍ର ଯଦି ମୂଢ଼, ଅସଭ୍ୟ, ଉଦ୍ଦେଶ୍ୟମୂଳକ ସ୍ୱଲାଭ ପରାୟଣ, ଭେଦବୁଦ୍ଧି କଥନ ପ୍ରିୟ ତେବେ ସେ ନିଶ୍ଚିତ ନିକୃଷ୍ଟ ମିତ୍ର । ଏପରି ମିତ୍ର ବେଶଧାରୀଠାରୁ

ସାବଧାନ ହେବା ଉଚିତ ।ଏପରି ମିତ୍ର ବେଶ୍ୟାର ମନ ସହ ସମାନ । ମୁଖରେ ମଧୁର ହାସ୍ୟ, ମନରେ ବଞ୍ଚନାଯୁକ୍ତ ବ୍ୟକ୍ତିଠାରୁ ସତର୍କ ଅବଲମ୍ବନ କରିବା ଦରକାର । ତା'ସହ ଲାଭପ୍ରଦ, ହିତକାରୀ ବିଷୟ ଆଲୋଚନା ଅତୀବ ବିପଦପୂର୍ଣ୍ଣ କାରଣ ସେ ଶତ୍ରୁ ନିକଟରେ ଖବର ପ୍ରେରଣ କରିବାର ସମ୍ଭାବନା ଅଛି । ବିନୟଯୁକ୍ତ ହସ୍ତରେ ଶସ୍ତ୍ର ଲୁଚାଇ ବାହାରେ ଅଶ୍ରୁମୋଚନ କରୁଛି । ସେ କେବେହେଁ ବିଶ୍ୱାସଯୋଗ୍ୟ ନୁହେଁ । ସମାଜରେ ମିତ୍ରର ପ୍ରଶସ୍ତି ଗାନ କରି ହୃଦୟରେ ନିନ୍ଦା ଭାବ ରଖିଛି । ଏପରି ବ୍ୟକ୍ତି ସହ ମଧୁର ସମ୍ପର୍କ ରଖି ଧୀରେ ଧୀରେ ଦୂରେଇ ଯିବା ସବୁଠୁଁ ସୁଖପ୍ରଦ । ଶତ୍ରୁ ଯଦି କାହା ନିକଟରେ ଦୈନ୍ୟ ଭାବ ଦେଖାଏ ତେବେ ତାହା ଗ୍ରହଣୀୟ ନୁହେଁ, ଧନୁର ପୂର୍ବ ବକ୍ର ରୂପ ହାନୀର ପୂର୍ବ ସୂଚନା ଦେଇଥାଏ । ଯଦି ଶତ୍ରୁ ବିରୋଧ କରିବାକୁ ଅସମର୍ଥ ତେବେ କୃତ୍ରିମ ମିତ୍ରତାଦ୍ୱାରା ତାର ସମ୍ମୁଖୀନ ହେବାକୁ ପଡ଼ିବ ।

ତିରୁବଲ୍ଲୁବର ତାଙ୍କ କାବ୍ୟମୟ ପଦ୍ଧତି ମାଧ୍ୟମରେ ଆଦର୍ଶ ରାଜା, ମନ୍ତ୍ରୀ, ନେତା ଓ ଅନ୍ୟାନ୍ୟ ଶାସନ ବିଭାଗର ଅଧିକାରୀ ସମ୍ବନ୍ଧରେ ବହୁ ଉଲ୍ଲେଖ କରିଛନ୍ତି । ଯେପରି ମୈତ୍ରୀର ଆଦର୍ଶ ଓ ନିକୃଷ୍ଟ ଉଭୟର ରୂପରେ ପରିଚୟ ଦେବା ସଙ୍ଗେ ସଙ୍ଗେ ସେନା, ସେନାଶୌର୍ଯ୍ୟ ସଙ୍ଗଠନର ତର୍କପୂର୍ଣ୍ଣ ବିଶ୍ଳେଷଣ ମଧ କରିଛନ୍ତି । ଦୁର୍ବଳର ରକ୍ଷାର ଦାୟିତ୍ୱ ବୀର ଯୋଦ୍ଧାର କର୍ତ୍ତବ୍ୟ ବୋଲି ସ୍ପଷ୍ଟ ଭାବେ କହିଛନ୍ତି । ତାଙ୍କ କାବ୍ୟର ମୂଳ ଲକ୍ଷ୍ୟ ଲୋକକଲ୍ୟାଣ । ଶିକ୍ଷାର ମହତ୍ତ୍ୱ, ନିଷ୍ପକ୍ଷ ନିର୍ଣ୍ଣୟ ନିମିତ୍ତ ସ୍ନେହ, ବୁଦ୍ଧି, ନିଶ୍ଚଳତା, ନିର୍ଲୋଭତା, ସାମାଜିକ ଜୀବନ ନିମିତ୍ତ ପାରସ୍ପରିକ ମଧୁର ସମ୍ବନ୍ଧ ଏବଂ ପ୍ରତ୍ୟେକ କର୍ମ ପାଇଁ ବ୍ୟକ୍ତି, କାଳ ଓ ସ୍ଥଳ ନିର୍ଣ୍ଣୟ ବିଷୟରେ ଆଲୋଚନା କରିଛନ୍ତି । ସେ ମଧ୍ୟ ସାମାଜିକ ସମ୍ବନ୍ଧୀୟ ଦୃଷ୍ଟିକୋଣରୁ ମୂଢ଼ତା, ନୀଚତା, ଅହଙ୍କାର ପ୍ରଭୃତିର ଦୁଷ୍ପରିଣାମ ଓ ସଙ୍କେତର ସୂଚନା ପ୍ରଦାନ କରିଛନ୍ତି । ପ୍ରୟୋଜନହୀନ ସମ୍ପତ୍ତି ଠୁଳ, ଦାରିଦ୍ର୍ୟ ଓ ଏହାର ଫଳ ସ୍ୱରୂପ ଭିକ୍ଷାବୃତ୍ତି ଓ ସାମାଜିକ ଜୀବନ ସଙ୍ଗଠନର ସମସ୍ୟା ସୃଷ୍ଟି କରେ ବୋଲି ସ୍ପଷ୍ଟ କହିଛନ୍ତି । ସେ ମଧ ସୂଚିତ କରିଛନ୍ତି ଯେ ଆଦର୍ଶ ସମାଜର ମୂଳ ଲକ୍ଷ୍ୟ ହେଉଛି ଉତ୍ପାଦନ ଓ ସୁଷମ ବଣ୍ଟନ-ଫଳତଃ ସାମାଜିକ ଜୀବନ ସ୍ଥିର ଓ ସୁସ୍ଥ ହେବ ।



# ୪ର୍ଥ ଅଧ୍ୟାୟ

## (ରାଗାତ୍ମିକ ସମ୍ବନ୍ଧ)

୧. କଣୋଡୁ କେଣିଣୈ ବିକନ୍ ବାୟୁଚୋରୁକଲ୍ଲୁ ଏନ୍ନ ପୟନୁମ ଇଲା । (କୁରଳ)
ଆଖିରେ ଆଖି ମିଶିଗଲେ ଯଦି ସବୁ ବୁଝାପଡ଼େ ତେବେ ତୁଣ୍ଡ କଥାର କ'ଣ ଆବଶ୍ୟକ ?

୨. ଉଡ଼ମ୍ବୋଡୁ ଉଇରିଡ଼ୈ ଏନ୍ନ ମଟ୍ରନ୍ନ ମଡ଼ନ୍ଦୈ ଏମ୍ମିଡ଼ୈ ନଟ୍ରପୁ । (କୁରଳ)
ଯେପରି ଦେହ ଓ ପ୍ରାଣ ଅଭିନ୍ନ, ପରସ୍ପର ଆଧାର
ସେପରି ନାରୀ ସହ ପୁରୁଷର ସମ୍ବନ୍ଧ ।

ବର୍ଣ୍ଣ ବିଷୟ ତାମିଲ୍ ସାହିତ୍ୟର ବିଶିଷ୍ଟ ପରମ୍ପରା । ଏହାର ପରିଚୟ ହେଉଛି ସଂଯୋଗ, ଶୃଙ୍ଗାର, ପୂର୍ବରାଗ, ସୌନ୍ଦର୍ଯ୍ୟର ପ୍ରଶଂସା, ପ୍ରେମର ମହିମା ଗାନ, ପ୍ରବାସ, ପ୍ରଣୟ, ଈର୍ଷା, ମାନଭଙ୍ଗ, ଚେତନା, ବିୟୋଗ ଶୃଙ୍ଗାର, ଅଙ୍ଗ ସୌଷ୍ଟବ, ବିୟୋଗଜନୀତ ବ୍ୟାକୁଳତା, ସ୍ୱପ୍ନ ଦର୍ଶନ, ସଂନ୍ଧ୍ୟା ସ୍ମରଣ, ନିଷ୍କର୍ଷ ।

## ତିରୁବଲ୍ଲୁବର କାବ୍ୟରେ ରାଗାତ୍ମିକ ସମ୍ବନ୍ଧ

ପ୍ରାଚୀନ କାଳରୁ ଆମ ଦେଶରେ ଧର୍ମପୂର୍ବକ ଅର୍ଥ ଓ କାମ ଦ୍ୱୟକୁ ସମ୍ପାଦନ କରିବା ମାନବ ଜୀବନର ଲକ୍ଷ୍ୟ ଭାବେ ନିର୍ଦ୍ଦେଶ କରାଯାଇଛି । ସିଦ୍ଧାନ୍ତ ଓ ବ୍ୟବହାର ଉପରେ କାମକୁ ମର୍ଯ୍ୟାଦିତ ଢ଼ଙ୍ଗରେ ଜୀବନର ବିଶିଷ୍ଟ ଅଙ୍ଗ ରୂପେ ମାନ୍ୟତା ପ୍ରଦାନ ମଧ୍ୟ କରାଯାଇଛି । କାମର ତାତ୍ପର୍ଯ୍ୟ ମାନବର ଆଧାରଭୂତ ଜୈବିକ ଆବଶ୍ୟକତା ଓ ଏଷଣା ଭାବେ ସ୍ୱୀକୃତ । ଏହାର ଅନାଦର କୌଣସି ଦୃଷ୍ଟିରୁ କରାଯିବା ଉଚିତ ନୁହେଁ । କାମ ତୃପ୍ତି ସର୍ବାଦୌ ବାଞ୍ଛନୀୟ, କାରଣ ଏହା ବିନା ସୃଷ୍ଟି ଅସମ୍ଭବ । ଏକ ପୁରୁଷାର୍ଥ ରୂପରେ କାମର କଳ୍ପନାରୁ ସ୍ପଷ୍ଟ ଯେ ଭାରତୀୟ ବିଚାରଧାରା କାମ ଏଷଣାର ସ୍ୱାଭାବିକ ଅଭିବ୍ୟକ୍ତିକୁ ଜୀବନର ଆବଶ୍ୟକତା ଭାବେ ଗ୍ରହଣ କରାଯାଇଛି ।

ନାରୀ ପୁରୁଷର ସ୍ୱାଭାବିକ ପ୍ରକୃତ ଆକର୍ଷଣକୁ କାମର ସାଧନ ଭାବେ ଗ୍ରହଣ କରାଯାଇଛି । ଏହାର ଏକ ଅଭିବ୍ୟକ୍ତି ହେଉଛି ଦାମ୍ପତ୍ୟ ଜୀବନ ଅଥବା ଗୃହସ୍ଥ ଜୀବନ । ମହାକବି ତିରୁବଲ୍ଲୁବର ଧର୍ମ ସମ୍ମତ କାମକୁ ତାଙ୍କ କାବ୍ୟରେ କେବଳ ହିଁ ସ୍ୱୀକୃତି ଦେଇଛନ୍ତି । ସେ ତାଙ୍କ ମହାକାବ୍ୟର କାମ-ଖଣ୍ଡ (କାମତ୍ତୁପ୍ପାଲ୍ଲୁ)ରେ ଗୃହସ୍ଥ ଜୀବନ ଅବଲମ୍ବନରେ ସାଂସାରିକ ସୁଖ ପ୍ରାପ୍ତି ବିଷୟରେ ବିସ୍ତୃତ ବର୍ଣ୍ଣନ କରିଛନ୍ତି । ଏହି ଖଣ୍ଡରେ ୨୫ ଅଧ୍ୟାୟ ଓ ୨୫୦ କୁରଳ ମାଧ୍ୟମରେ ରାଗାତ୍ମିକ ସମ୍ବନ୍ଧରେ ବର୍ଣ୍ଣନ ହୋଇଛି ।

## ବର୍ଣ୍ଣ୍ୟ ବିଷୟ

ଗୁପ୍ତ ପ୍ରେମ ଅନ୍ତର୍ଗତ ପ୍ରଥମ ଦର୍ଶନ, ସଙ୍କେତ, ପରିଚୟ, ମିଳନ ସୁଖ, ସୌନ୍ଦର୍ଯ୍ୟ, ପ୍ରଶଂସା, ପ୍ରେମର ମହିମା ଇତ୍ୟାଦିର ଉପରାନ୍ତ ଗୁପ୍ତ ପ୍ରେମର ପ୍ରବାଦ ଚର୍ଚ୍ଚାର ବର୍ଣ୍ଣନ ହୋଇଛି । ପୁନଶ୍ଚ ପତିବ୍ରତା ଅନ୍ତର୍ଗତ ଅସହ୍ୟ ବିୟୋଗ, ବିରହିଣୀର ବିଳାପ, ଅଶ୍ରୁପୂର୍ଣ୍ଣ ନେତ୍ର ଇତ୍ୟାଦି ବିରହ ସମ୍ବନ୍ଧୀୟ ଅନେକ ବିସ୍ତୃତ ବର୍ଣ୍ଣନା ମଧ୍ୟ ହୋଇଛି । ଶେଷରେ ପ୍ରିୟଜନର ମିଳନ ପରେ ମାନଭଙ୍ଗ, ପ୍ରଣୟ, କଳହ ଓ ଏହାର ସୂକ୍ଷ୍ମତା, ଆନନ୍ଦ ଇତ୍ୟାଦି ଆଲୋଚନା କରିବା ସଙ୍ଗେ ସଙ୍ଗେ କବି ପ୍ରେମର ସଂଯୋଗ ଓ ବିୟୋଗର ଅତ୍ୟନ୍ତ ସୁଖ ତଥା ମନୋବୈଜ୍ଞାନିକ ବିବେଚନ ପ୍ରସ୍ତୁତ କରିଛନ୍ତି ।

## ତାମିଲ୍ ସାହିତ୍ୟର ବିଶିଷ୍ଟ ପରମ୍ପରା – ଏକ ପରିଚୟ

ରୂପ ଆସକ୍ତି ଓ ଶରୀର ଆକର୍ଷଣର ପରିଣତି ହେଉଛି ସଂଯୋଗ ସୁଖ । ନାୟକ-ନାୟିକାଙ୍କ ଗୁପ୍ତ ପ୍ରେମ, ସୁରତ, ବିହାର, ଶରୀର ଆକର୍ଷଣ ଫଳ ସ୍ୱରୂପ ମାନସିକ ସୁଖ ଓ ଆନନ୍ଦ, ପରସ୍ପର ସଙ୍କେତ ପ୍ରଭୃତିରୁ ପ୍ରେମ ବ୍ୟାପାର ଆରମ୍ଭ ହୁଏ । ସଂସ୍କୃତ ସାହିତ୍ୟ ଏବଂ ପ୍ରାଚୀନ ତାମିଲ୍ ସାହିତ୍ୟରେ ଶୃଙ୍ଗାର ବର୍ଣ୍ଣନ ତାହା ମଧ୍ୟରେ ପର୍ଯ୍ୟାପ୍ତ ପାର୍ଥକ୍ୟ ପରିଲକ୍ଷିତ ହୁଏ ।

ମଂହାକବିଙ୍କ କାମ ଖଣ୍ଡରେ ନାୟକ -ନାୟିକା ମଧ୍ୟରେ ପ୍ରଥମ ଦର୍ଶନ (ପୂର୍ବରାଗ), ପ୍ରେମ, ବିରହ ଏବଂ ପୁର୍ନମିଳନ ବର୍ଣ୍ଣିତ ହୋଇଛି । ପ୍ରେମ ପଥରେ ନାୟକ-ନାୟିକାଙ୍କ ଆକସ୍ମିକ ମିଳନ ପର୍ବ ଆରମ୍ଭ ହୁଏ । ପ୍ରଥମ ଦର୍ଶନରେ ପ୍ରେମର ସୂତ୍ରପାତ ହୁଏ, ଏହା ଧୀରେ ଧୀରେ ବିକଶିତ ହୋଇ ଶାନ୍ତ ପ୍ରେମ ସମ୍ବନ୍ଧ ଶବ୍ଦରେ

ଅଭିବ୍ୟକ୍ତ ହୁଏ । ପ୍ରିୟ ଓ ପ୍ରିୟା ପରିଣୟ ସୂତ୍ରରେ ଆବଦ୍ଧ ହୋଇ ଯାଆନ୍ତି, ପରସ୍ପର କେବଳ ଅଦମ୍ୟ ବିଶ୍ୱାସରେ ଏହା ଅତିରିକ୍ତ ସମ୍ବନ୍ଧ ସୂତ୍ରରେ କୌଣସି ସାମାଜିକ କ୍ରିୟା (Social rites) ସମ୍ପନ୍ନ ହୁଏ ନାହିଁ ଯାହା ସେକାଳରେ ତାମିଲ୍ ପ୍ରଦେଶରେ ସାମାଜିକ ମାନ୍ୟତା ନିମନ୍ତେ ଏତିକି ମାତ୍ର ପର୍ଯ୍ୟାପ୍ତ ଥିଲା । ଯାହାକି ଧର୍ମ ଶାସ୍ତ୍ର ଓ ସଂସ୍କୃତ କାବ୍ୟରେ ବର୍ଣ୍ଣିତ ଗନ୍ଧର୍ବ ବିବାହ ସହ ସମାନ । ପ୍ରେମୀ ଯୁଗଳଙ୍କ ପ୍ରେମ ସମ୍ବନ୍ଧ ସେମାନଙ୍କ ଭିତରେ ସୀମିତ ରହୁଥିଲା । କେବଳ ସେମାନେ ଘଟଣାକୁ ପ୍ରକାଶ କରିବା ପାଇଁ ସମୁଚିତ ଅବସରକୁ ପ୍ରତୀକ୍ଷା ହିଁ କରୁଥିଲେ, ମାତ୍ର ନିଜକୁ ଅସମର୍ଥ ବୋଲି ଭାବୁଥିଲେ । ପ୍ରେମ ବିଷୟରେ ଧୈର୍ଯ୍ୟର ଅବକାଶ କାହିଁ ? ପ୍ରେମୀ ଯୁଗଳ ଲୁଚି ଛପି ମିଳନ ପାଇଁ ସର୍ବଦା ବ୍ୟାକୁଳ । ଉଭୟଙ୍କ ମିଳନ ପାଇଁ ଯୁବତୀର ମାତା ପିତା ଓ ସମ୍ପର୍କୀୟମାନେ ମାନସିକ ସ୍ତରରେ ସ୍ୱୀକୃତି ପ୍ରଦାନ କରିବାକୁ କୁଣ୍ଠିତ କିନ୍ତୁ ମିଳନ ସମ୍ବନ୍ଧୀୟ ବିଷୟ ଧୀରେ ଧୀରେ ଚର୍ଚ୍ଚା ହେବାକୁ ଲାଗୁଥିଲା । ଯୁବକଟି ଏଥିରେ ଶାରୀରିକ ତପସ୍ୟା କରିବା ଫଳରେ ଯୁବତୀର ପିତା ମାତା ଓ ସମ୍ପର୍କୀୟମାନେ ଶେଷରେ ତାକୁ ସମର୍ପଣ କରିବାକୁ ବାଧ୍ୟ ହେଉଥିଲେ ।

## ସଂଯୋଗ ଶୃଙ୍ଗାର

ପାରମ୍ପାରିକ ପ୍ରେମରେ ବଶୀଭୂତ ନାୟକ ନାୟିକା ଯେତେବେଳେ ଦର୍ଶନ, ମିଳନ, ସ୍ପର୍ଶ, ଆଳାପ, ଆଦିରେ ଲୀନ ହୁଅନ୍ତି ଏହାକୁ ମହାକବି ସଂଯୋଗ-ଶୃଙ୍ଗାର ଭାବରେ ନାମିତ କରିଛନ୍ତି ।

## ପୂର୍ବରାଗ

ତିରୁବଲ୍ଲୁବରଙ୍କ ନାୟକ ଓ ନାୟିକା ପ୍ରଥମ ମିଳନରେ ପ୍ରେମର ଅଙ୍କୁର ପ୍ରସ୍ଫୁଟିତ କରାଇଛନ୍ତି । ଏକାନ୍ତରେ ନାୟକ- ନାୟିକାର ଦର୍ଶନରେ ଆକୃଷ୍ଟ ହୋଇଯାଏ । ପରିଚୟ ଅଭାବରୁ ତା'ର ରୂପମାଧୁରୀର ପ୍ରଶଂସା କରିବସେ । ମନେ ମନେ ଭାବେ ଏହି କ'ଣ ସ୍ୱର୍ଗ ସୁନ୍ଦରୀ ? ନାୟକ ହୃଦୟରେ ନାୟିକାର ତୀକ୍ଷ୍ଣ ପ୍ରେମ କଟାକ୍ଷ ବାରମ୍ବାର ଆଘାତ କରେ । ନାୟିକାର ବକ୍ର ଭୃକୁଟୀ, ଉନ୍ନତ କୁଚଭାଗ ପରିବେଷ୍ଟିତ ବସ୍ତ୍ର, ଉଜ୍ଜ୍ୱଳ ମସ୍ତିଷ୍କ, ହରିଣୀର ଚଞ୍ଚଳ ଦୃଷ୍ଟି ନାୟକକୁ ପ୍ରେମ ବନ୍ଧନରେ ପକାଇ ଦିଏ । ଏହି ଆଦ୍ୟ ମିଳନ ଉନ୍ନତି ପ୍ରାକୃତିକ ବାତାବରଣରେ ପ୍ରବଳ ମିଳନ

ନିମିତ୍ତ ବାରମ୍ବାର ଆକର୍ଷଣ କରେ । ପୂର୍ବାନୁରାଗିଣୀ ନାୟିକାର ଅବସ୍ଥା ଦୃଷ୍ଟିରୁ ମୁଗ୍ଧା ପ୍ରାୟ ଅନୁମିତ ହୁଏ । ଏହି ଅବସ୍ଥାରେ ଭାବୁକତା ଅତୀବ ତୀବ୍ର ହୋଇ ଉଠେ । ଏହି ଅବସ୍ଥା ମହାକବିଙ୍କ ମୁଗ୍ଧ ଅବସ୍ଥାର ଅନୁପମ ଚିତ୍ରଣ ।

ଏକାନ୍ତ ସମୟରେ ଦର୍ଶନ ରୂପର ପ୍ରଭାବ ଧୀରେ ଧୀରେ ବିକଶିତ ହୁଏ । ସଙ୍କେତ ମାଧ୍ୟମରେ ମନର ଭାବ ବୁଝା ପଡ଼ିବା ପରେ ଚକ୍ଷୁର ମିଳନ ହେବା ସଙ୍ଗେ ସଙ୍ଗେ ହୃଦୟର ମିଳନ ହୁଏ । ଉଭୟଙ୍କ ଶରୀରରେ ରୂପ,ରସ,ଗନ୍ଧ, ଶବ୍ଦ ଓ ସ୍ପର୍ଶ ଏହି ପାଞ୍ଚ ବିଷୟର ସୁଖ ଲାଭ ହୁଏ । ଉଭୟେ ଆଲିଙ୍ଗନ ସୁଖରେ ଅବିଭୂତ ହୋଇ ଉଠନ୍ତି । ନାୟିକା ଶରୀରର ପ୍ରତ୍ୟେକ ସ୍ପର୍ଶ ପ୍ରାଣକୁ ଅମୃତ ସମାନ ସ୍ଫୁର୍ତ୍ତିପ୍ରଦାନ କରେ । ଏଥିରୁ ଯେଉଁ ଆନନ୍ଦ ମିଳେ କବି ଏହାକୁ ପରିବାରରେ ବାଣ୍ଟି ଭୋଜନାନନ୍ଦ ସହ ତୁଳନା କରିଛନ୍ତି ।

ମହାକବିଙ୍କ ସଂଯୋଗ ଶୃଙ୍ଗାର ବର୍ଣ୍ଣନ ନିଶ୍ଚିତ ଭାବେ ମର୍ଯ୍ୟାଦାସମ୍ପନ୍ନ । ଶୃଙ୍ଗାରର ଉନ୍ମୁକ୍ତ ବାତାବରଣରେ ଉନ୍ମୁକ୍ତ ବର୍ଣ୍ଣନ ମର୍ଯ୍ୟାଦା ଆଧାରିତ । ନୈତିକ ଦୃଷ୍ଟି ଭଙ୍ଗୀର ସୀମାରେଖା ବଳୟରେ ରହି ସେ ଉନ୍ମୁକ୍ତ ଶୃଙ୍ଗାରର ମୌଳିକତା ଓ ପ୍ରାକୃତିକତା ବର୍ଣ୍ଣନରେ ସିଦ୍ଧହସ୍ତ ।

**ମାନ :-** ତିରୁବଲ୍ଲୁବର କାବ୍ୟରେ 'ମାନ'କୁ ଶୃଙ୍ଗାରର ବିଭିନ୍ନ ରୂପରେ ସର୍ବାଧିକ ମହତ୍ତ୍ୱ ପ୍ରଦାନ କରିଛନ୍ତି । 'ମନ' ଏଠାରେ ପ୍ରଣୟମାନ ଏବଂ ପ୍ରେମ ବୃଦ୍ଧି ଉଦ୍ଦେଶ୍ୟରେ ଅଭିପ୍ରେତ । ଗୃହସ୍ଥ ମର୍ଯ୍ୟାଦା ସୀମା ମଧ୍ୟରେ ଉଲ୍ଲାସମୟୀ ଜୀବନ ନିର୍ବାହ କରିବା ପାଇଁ ପାରସ୍ପରିକ ହାସ ପରିହାସ ରୋଷ-ରାଗ, ମାନ-ଅଭିମାନ ଆଦି ଭରପୂର ହୋଇଥାଏ, ଏଠାରେ କବିଙ୍କ ଦୃଷ୍ଟିଭଙ୍ଗି ପରମ୍ପରାଠାରୁ ସ୍ୱତନ୍ତ୍ର ବୋଲି ବାରି ହୋଇଯାଏ ।

**ପ୍ରଣୟମାନ :-** ପ୍ରଣୟ କଳହ ପ୍ରଣୟମାନର ପ୍ରଧାନ ଆଧାର । ପ୍ରିୟ ହୃଦୟରେ ପ୍ରେମର ଉଦ୍ରେକ ନିମନ୍ତେ ମାନ ଅଭିମାନ, ମିଛ, ରାଗ-ରଷା ନିକଟରୁ ଦୂରେଇ ଠ'ରା ନ ଦେବାର ଆବଶ୍ୟକତା ରହିଛି । ମାନ ହିଁ ପ୍ରେମର ଲବଣ ସମାନ ଯେପରି ଭୋଜନରେ ଲବଣର ଆବଶ୍ୟକତା ଅଛି । ପୁନଶ୍ଚ ଅଧିକ ଲବଣ ଭୋଜନ ପାଇଁ ରୁଚିକର ନୁହେଁ, ସେପରି ମାନ କରିବାର ମଧ୍ୟ ସୀମା ଅଛି । ମାନ

କରିବାର ଲକ୍ଷ୍ୟ ପ୍ରେମର ବିକାଶ ମାତ୍ର । ପ୍ରେମ କଳହ ପ୍ରେମକୁ ଅଧିକ ମିଷ୍ଟ କରେ ନଚେତ୍ ଫଳ ଯେପରି ଅଧେ କଞ୍ଚା, ଅଧେ ପାଚିଲା ଭଳି ରହିଯାଏ ।

ପ୍ରେମିକା ମନରେ ମାନ ରଖି ଲଜ୍ଜାରେ ଚୁପ୍ ହୋଇ ବସି ରହେ, କିନ୍ତୁ ତା'ର ହୃଦୟ ପ୍ରିୟ ପାଇଁ ଆନ୍ଦୋଳିତ ହୁଏ । ନାୟକର ନିନ୍ଦା ସହ୍ୟ କରିପାରେ ନାହିଁ । ନାୟକର ବିପତ୍ତି କାଳରେ ତା' ହୃଦୟ ବିଚଳିତ ହୋଇଯାଏ । ବେଶୀ ସମୟ ସେ ମାନ ରଖି ଥୟ ଧରି ପାରେ ନାହିଁ ।

ପ୍ରେମର ନିରନ୍ତରତା ଓ ଏକତାର ଫଳସ୍ୱରୂପ ଆନନ୍ଦବିହୀନତାରେ ପରିଣତ ହେଉଥାଏ । ତେଣୁ ପ୍ରଣୟ କଳହ ଆନନ୍ଦର ପୁନଃ ସୃଜନ କରିଦିଏ । ପ୍ରେମ ସମ୍ବନ୍ଧୀୟ କିଞ୍ଚିତ୍ ମାତ୍ର ଭଟ୍ଟା ଜମିଲେ ପ୍ରେମ ଯୋଗୁଁ ଜୁଆର ଆସେ- ତେଣୁ ଲଘୁ କଳହ ଖୁବ୍ ପ୍ରଶଂସନୀୟ । ଅଧିକ ଭୋଜନ ଯେପରି ଅଗ୍ନିମାନ୍ଦ୍ୟ ସୃଷ୍ଟି କରେ, ଠିକ୍ ପ୍ରେମର ଏକରୂପତା ଅନୁରୂପ ପ୍ରଭାବ ବିସ୍ତାର କରେ । ପ୍ରିୟ ନିର୍ଦ୍ଦୋଷ ହେଲେ ନାୟିକା କ୍ଷଣକାଳ ଅଲଗ୍ନ ରହିବାକୁ ଆନନ୍ଦ ଅନୁଭବ କରେ । ଜଳ ଯେପରି ପୃଥିବୀ ନିକଟରେ ଲୟ ପ୍ରାପ୍ତ ହୁଏ, ନାୟକ ନାୟିକା ପ୍ରେମ ଫାଶରେ ଆବଦ୍ଧ ହେବା ପାଇଁ ପ୍ରଣୟମାନ ସ୍ୱର୍ଗସୁଖ ପ୍ରଦାନ କରେ । କବି ବଲ୍ଲୁବରଙ୍କ ମତ ଯେ ସଦ୍‌ଗୁଣୀ ସଜ୍ଜନଙ୍କୁ ଶୋଭା ସୁମନ ନୟନୀର ମନରେ ଉତ୍ପନ୍ନ ପ୍ରଣୟ କଳହ ହିଁ ଏକମାତ୍ର ଅଟେ । ପ୍ରଣୟମାନର ଏତେ ମହତ୍ତ୍ୱ ସତ୍ତ୍ୱେ ଆଶଙ୍କା ଉତ୍ପନ୍ନ ହୁଏ ଯେ ମିଳନ ସୁଖ କାଳେ ଅସ୍ଥାୟୀ ରୂପ ଧାରଣ ହେବ । ତିରୁବଲ୍ଲୁବିରଙ୍କ ନିଶ୍ଚିତ ମତ ଯେ ପ୍ରଣୟ କଳହ ଯୋଗୁଁ ପ୍ରେମାନନ୍ଦ ପ୍ରଣୟ କଳହରେ ପୂର୍ଣ୍ଣାଙ୍ଗ ଲାଭ କରେ ଏବଂ ଉଭୟ ପ୍ରେମାଲିଙ୍ଗନରେ ଆବଦ୍ଧ ହୁଅନ୍ତି ।

**ଈର୍ଷାମାନ :-** ନାୟିକା ଯେ ପରସ୍ତ୍ରୀ ସହ ପ୍ରେମିକକୁ ଦେଖିଲେ ରାଗରେ, ଜର୍ଜରିତ ହୋଇଯାଏ । ବଲ୍ଲୁବରଙ୍କ ସମୟରେ ଆଦର୍ଶ ସାମାଜିକ ସ୍ଥିତି ଚିତ୍ର ଯେ ପୁରୁଷର ପରସ୍ତ୍ରୀ ଗମନ ସମ୍ପୂର୍ଣ୍ଣ ତ୍ୟାଜ୍ୟ ଭାବେ ଗୃହୀତ ହେଉଥିଲା । ଏପରିକି ନାୟକ ଯଦି ନୀରବ ହୋଇ ବସି ଯାଉଥିଲା କିମ୍ବା ନାୟିକା ମୁଖକୁ ଚାହିଁ ସ୍ଥିର ହୋଇ ବସୁଥିଲା, ନାୟିକା ମନ ବିଚଳିତ ହୋଇ ଯାଉଥିଲା । ସେ ସଙ୍ଗେ ସଙ୍ଗେ ପ୍ରଶ୍ନ କରୁଥିଲା ତୁମେ କେଉଁ ସ୍ତ୍ରୀ ପ୍ରେମରେ ପଡ଼ିଯାଇଛ ? 'ତା' କଥା ଚୁପ୍ ଚାପ୍ ବସି ଖାଲି

ଭାବୁଚ ?' ତା'ର ପ୍ରିୟ ଲୋକ ଅନ୍ୟ ସ୍ତ୍ରୀ କଥା କଳ୍ପନାରେ ସୁଦ୍ଧା ଭାବିବାକୁ ପ୍ରଶ୍ରୟ ଦେଉ ନ ଥିଲା । କବି ଇର୍ଷାମାନ ମାଧ୍ୟମରେ ଏହାକୁ ସ୍ପଷ୍ଟ କରି ଦେଇଛନ୍ତି ।

**ମାନଭଙ୍ଗ** - ମାନଭଂଜନ ଉପରାନ୍ତ ସ୍ଥିତି ବେଳେ ବେଳେ କଠିନ ହୋଇଯାଏ । ପ୍ରେମ ରୂପକ କୁରାଢ଼ି ମାନ ରୂପକ ଅର୍ଗଳୀ ଓ କବାଟକୁ ଭାଙ୍ଗି ନଷ୍ଟ କରିଦିଏ । ନାୟିକା ବହୁ କଷ୍ଟରେ ମଧ୍ୟ ରାତ୍ରି ପର୍ଯ୍ୟନ୍ତ ମାନ କରେ, ତା'ପରେ ତାର ସଂଯମ ଆପେ ଆପେ ଭୁଷୁଡ଼ି ପଡ଼େ । ସଂଯମକୁ ସେ ମନେ ମନେ ଛପାଇବା ପାଇଁ ପ୍ରୟାସ କରେ । ଛିଙ୍କ ଯେପରି ପୂର୍ବ ସୂଚନା ନ ଦେଇ ଆପେ ଆପେ ପ୍ରକାଶ ପାଏ । ନାୟିକା ପ୍ରଣୟ କଳହ ଉଦ୍ଦେଶ୍ୟରେ ପ୍ରିୟ ନିକଟରେ ପହଞ୍ଚେ କିନ୍ତୁ ପ୍ରିୟ ସହ ପ୍ରିୟା ହୃଦୟ ମିଶିଯାଏ ଓ ପୂର୍ବ କଳହ ପ୍ରିୟାର ବିସ୍ମରଣ ହୁଏ ଏବଂ ପ୍ରିୟକୁ ଆଲିଙ୍ଗନ କରିବାକୁ ଲାଗେ । ତା'ର ମାନ, ଅଭିମାନ, ଭାବନା କୁଆଡ଼େ ମିଳାଇଯାଏ, ସେ ଅସ୍ଥିର ହୋଇ ନାୟକଙ୍କୁ ଆଲିଙ୍ଗନ କରେ । ପ୍ରେମରେ ବନ୍ୟା ସମାନ ଭୟଙ୍କର ପ୍ରବାହ ସୃଷ୍ଟି କରେ – ଛୋଟ ମୋଟ କଳହର ପ୍ରୟୋଜନର ଲାଭ ପ୍ରେମରେ କ'ଣ ବା ଅଛି, ସେ ଭାବେ । ଲେଖିବା ସମୟରେ ନେତ୍ର ଯେଉଁ ଭଳି ଲେଖନୀକୁ ଦେଖେ ନାହିଁ, ସେ ପ୍ରକାର ପ୍ରିୟତମକୁ ଦେଖିବା ମାତ୍ରେ ଯେପରି ପ୍ରିୟତମର କୌଣସି ଦୋଷ ଜଣାପଡ଼େ ନାହିଁ । ମଦ୍ୟପ ମଦ ଦେଖିଲା ମାତ୍ରେ ନିଜର ବୁଦ୍ଧି ବିବେକ ହରାଇ ବସେ; ପ୍ରିୟର ବକ୍ଷସ୍ଥଳ ଦେଖୁ ଦେଖୁ ପ୍ରିୟା ତାଙ୍କୁ କୋଳାଗ୍ରତ କରି ନିଜ ମସ୍ତକ ସେଠି ରଖିବା ପାଇଁ ବ୍ୟାକୁଳ ହୋଇ ଉଠେ । ବାସ୍ତବରେ ପ୍ରେମରୂପି ମଦିରାର ପ୍ରଭାବ ଅଦ୍‌ଭୂତ । ମଦିରାକୁ ପାନ କଲା ପରେ ତାହାର ପ୍ରଭାବ ଜଣାପଡ଼େ, କିନ୍ତୁ ପ୍ରିୟା ପ୍ରିୟକୁ ଦର୍ଶନ ଓ ସ୍ମରଣ ମାତ୍ରେ ହିଁ ଆନନ୍ଦ ଅନୁଭବ କରେ । ଏହି ପ୍ରକାର ପ୍ରେମ ମଦିରାରେ ବଶୀଭୂତ ହୋଇ ନାୟିକାର ମାନଭଙ୍ଗ ଆପେ ଆପେ ହୋଇଯାଏ । ନାୟକର ଅନୁପସ୍ଥିତିରେ ନାୟକର ଅନେକ ଦୋଷ ନାୟିକା ଦୃଷ୍ଟିକୁ ଚାଲି ଆସେ; କିନ୍ତୁ ସ୍ୱତଃ ପ୍ରେମାଲିଙ୍ଗନ କାଳରେ ଅତୀବ ବିବଶ ହୋଇ ନାୟିକା ଅଗ୍ନିରେ କୋମଳ ପିପ୍ପଳ ପତ୍ର ଭଳି କାମାଗ୍ନିରେ ଏକାକାର ହୋଇଯାଏ ।

**ସୌନ୍ଦର୍ଯ୍ୟ ଚେତନା** - ମହାକବି ନାୟିକାର ରୂପରାଶି ବର୍ଣ୍ଣନ କରିବା ସମୟରେ ନାୟକ ନାୟିକାଙ୍କ ଅଙ୍ଗ ବର୍ଣ୍ଣନ କରି ନାୟିକାର ସମଗ୍ର ରୂପ ଚେତନା

ସର୍ବ ସମ୍ମୁଖରେ ଉପସ୍ଥାପନା କରିଛନ୍ତି । ନାୟିକାର ଅଙ୍ଗର କୋମଳତା, ନେତ୍ରର ଅଦ୍‌ଭୂତ ପ୍ରଭାବ, ସୁଖର ଅତୀବ ପ୍ରଭାବୋତ୍ପାଦକ ସୌନ୍ଦର୍ଯ୍ୟ ନାୟକର ହୃଦୟକୁ ବାନ୍ଧି ରଖିଥାଏ ।

ମହାକବିଙ୍କ ସୌନ୍ଦର୍ଯ୍ୟ ଚିତ୍ରଣର ଭଙ୍ଗିମା ଓ ରସର ଅଦ୍ଭୁତ ସମିଶ୍ରଣ ହୋଇଛି । ମୁଖ ସୌନ୍ଦର୍ଯ୍ୟର ବର୍ଣ୍ଣନ କବିଙ୍କ ବିଶେଷ ଦୃଷ୍ଟି ନିବଦ୍ଧ ହୋଇଛି । 'ହେ ଚନ୍ଦ୍ରମା, ତୁମେ ଏ ସୁନ୍ଦରୀ ମୁଖ ସୌନ୍ଦର୍ଯ୍ୟ ଠାରୁ ନିଶ୍ଚେ କମ୍ ଦେଖାଯାଉଛ । ତେଣୁ ଆକାଶର ନକ୍ଷତ୍ରମାନେ ଭ୍ରମରେ ପଡ଼ି ବିଚଳିତ ହେଉଛନ୍ତି' । ବାଉଁଶ ସମାନ ସରଳ ଶରୀର, କୋଳି ଭଳି ଦନ୍ତପନ୍ତି, ସୁଗନ୍ଧିଯୁକ୍ତ କୋମଳ ଶରୀର, ଅଞ୍ଜନ ରଞ୍ଜିତ ନେତ୍ରସୁନ୍ଦରୀକୁ ଅପ୍ସରୀଠାରୁ ଆହୁରି ସୁନ୍ଦରୀ କରିଥାଏ । ଚନ୍ଦ୍ରମା ଅପୂର୍ଣ୍ଣତାରୁ ପୂର୍ଣ୍ଣତା ଆଡ଼କୁ ସଦା ଗତି କରୁଥାଏ କିନ୍ତୁ ସୁନ୍ଦରୀର ମୁଖ ମଣ୍ଡଳ ସ୍ୱୟଂ ସମ୍ପୂର୍ଣ୍ଣ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ଏବଂ ଚନ୍ଦ୍ରମା ପରି କଳଙ୍କିତ ନୁହେଁ ବରଂ ନିଷ୍କଳଙ୍କ । ସୁନ୍ଦରୀର ନେତ୍ର ଯୁଗଳ ଦର୍ଶନରେ ନିଜକୁ ତୁଚ୍ଛ ଭାବି କୁମୁଦିନୀ ନତମସ୍ତକ ହୋଇଯାଏ । ସେ ଚନ୍ଦ୍ରମାକୁ ନ ଚାହିଁ ସୁନ୍ଦରୀ ନେତ୍ରକୁ ଚାହିଁ ରହେ । ସୁନ୍ଦରୀର ପ୍ରିୟ ଦର୍ଶନରେ ତା'ର ହୃଦୟ ତରଳି ଯାଏ, ବାଣୀ ମୌନ ହୋଇଯାଏ ଏବଂ ପ୍ରିୟା ତା' ରୂପ ସୌନ୍ଦର୍ଯ୍ୟ ଫାଶରେ ପ୍ରିୟକୁ ବନ୍ଧନ କରି ଚେତନାଚ୍ୟୁତ ହୋଇଯାଏ ।

**ବିୟୋଗ ଶୃଙ୍ଗାର** - ବିରହାବସ୍ଥାରେ ଶୃଙ୍ଗାର ରସର ପୂର୍ଣ୍ଣ ପ୍ରସ୍ଫୁଟନ ହୋଇଥାଏ । ଏହି ସ୍ଥିତିରେ ମାନସିକ ମିଳନ ହୋଇଥାଏ । ମିଳନର ଇଚ୍ଛା ବଢ଼ି ବଢ଼ି ଗଲାବେଳେ ପ୍ରେମର ସ୍ଥିତି ଗଭୀର ହୋଇଯାଏ ।

ବିରହ ବିକାଶର ସ୍ଥିତି ପ୍ରକୃତରେ ଅଦ୍ଭୂତ । ସଂଯୋଗରେ ଶରୀର ପ୍ରମୁଖ ଭାଗରେ ରହେ କିନ୍ତୁ ବିୟୋଗରେ ଇନ୍ଦ୍ରିୟ ଜନ୍ୟ ସୁଖ ପ୍ରାପ୍ତି ବଦଳରେ ପ୍ରିୟଦର୍ଶନର କାମନାର ଶେଷ ଭାଗକୁ ରହେ । ଏତଦ୍‌ବ୍ୟତୀତ ପ୍ରିୟର କୁଶଳ ସମାଚାର, ତାଙ୍କ ସନ୍ଦେଶ କିମ୍ବା ତାଙ୍କ ବିଷୟରେ ଅନ୍ୟ କୌଣସି କଥନ ପ୍ରମୁଖ ଅଂଶ ହୋଇ ରହେ । ଏହି ପ୍ରେମ ଇନ୍ଦ୍ରିୟ ସୁଖରୁ ମାନସିକ ସ୍ଥିତି ଆଡ଼କୁ ଅପସାରିତ ହୁଏ ।

ପ୍ରିୟ ବିରହରେ ନାୟିକା ଶରୀରର ସ୍ୱାଭାବିକ କାନ୍ତି, ସୌନ୍ଦର୍ଯ୍ୟ ମଳିନ ପଡ଼ିଯାଏ, ଫଳତଃ ସଜଫୁଟା ଫୁଲ ସଦୃଶ ନେତ୍ର ମଉଳି ଯାଏ । କ୍ରନ୍ଦନରତ ଚକ୍ଷୁ

ଲାଲ୍ ଦିଶେ । ଆଲିଙ୍ଗନ ଆନନ୍ଦରେ ଉଲ୍ଲସିତ ବାହୁଯୁଗଳ ନମ୍ର ହୋଇ କମ୍ପିତ ହୁଏ । ହସ୍ତରେ ପିନ୍ଧିଥିବା କଙ୍କଣ ଢ଼ିଲା ହୋଇଯାଏ । ନିଷ୍ଠୁର ପ୍ରିୟତମର ନିର୍ମମତା ସ୍ମରଣ କରି ହୃଦୟ କମ୍ପିତ ହୁଏ । ପ୍ରିୟତମ ନାମର ଅପଯଶ ଶ୍ରବଣ ମାତ୍ରେ ଆପଣାକୁ ଅସହାୟ ମନେକରେ । ବିରହ ଜନିତ ପୀଡ଼ାରେ ଶରୀର ମଳିନ ଦିଶେ ଓ ଲାବଣ୍ୟ ରହିତ ହୋଇଯାଏ । ପ୍ରବଳ ମାନସିକ ଯନ୍ତ୍ରଣାରେ ବ୍ୟଥିତ ହୁଏ । ନାୟିକା ପ୍ରିୟତମ ପ୍ରବାସ ଗମନରେ ସ୍ୱୀକୃତି ଦେଲେ ମଧ ମନକୁ ମନ କହେ – 'ଏସବୁ ଦେଖି ମନର ଦୁଃଖ କାହାକୁ କହିବି ?' ତିରୁବଲ୍ଲୁବର ପ୍ରିୟତମ ପ୍ରବାସଜନ୍ୟ ବିରହ ବିଶଦ ଭାବେ କାବ୍ୟରେ ବର୍ଣ୍ଣନ କରିଅଛନ୍ତି । ପ୍ରବାସ ଗମନର ଦୁଇଟି କାରଣ କବି ଉଲ୍ଲେଖ କରିଛନ୍ତି, ୧– ଧନୋପାର୍ଜ୍ଜନ, ୨– ଯୁଦ୍ଧ । ପ୍ରେମ ବର୍ଣ୍ଣନର ପ୍ରାରମ୍ଭିକ ଅଂଶରେ କବି ଶରୀରଜନ୍ୟ ସୁଖ କାମନାର ପ୍ରାବଲ୍ୟ ବର୍ଣ୍ଣନା କରିଛନ୍ତି । ପ୍ରବାସରୁ କୌଣସି ସୂଚନା ମିଳିବା ମାତ୍ରେ ଇନ୍ଦ୍ରିୟାନୁଭୂତି ଭାବନା ଅପସାରିତ ହୋଇ ନାୟିକାର ମାନସିକ ସ୍ଥିତିରେ ପହଞ୍ଚାଏ । ସେ ପ୍ରିୟ ଭାବନାରେ ମଜ୍ଜିଯାଏ । ବୃକ୍ଷରୁ ଶାଖାଗୁଡ଼ିକ କାଟିଦେଲେ ଯେଉଁ ପରିସ୍ଥିତି ହୁଏ ବିରହିଣୀର ଅସହାୟତା ଓ ଦୈନ୍ୟ ସେହି ସ୍ଥିତିରେ ପହଞ୍ଚିଯାଏ ।

ନାୟକର ପ୍ରବାସରୁ କୌଣସି ସୂଚନା ମିଳିବା ମାତ୍ରେ ନାୟିକାର ସମସ୍ତ ଅବୟବ ଓ ମନରେ ବିଚିତ୍ର ପ୍ରଭାବ ସୃଷ୍ଟି ହୁଏ । ପ୍ରିୟତମ ସ୍ୱଭାବତଃ ଶୀତଳ କିନ୍ତୁ ତା'ର ବିୟୋଗର ପ୍ରଭାବ ଖୁବ୍ ପ୍ରବଳ । ପ୍ରିୟତମ ପ୍ରବାସକୁ ଗଲାବେଳେ ପ୍ରିୟତମା କହି ଉଠେ – 'ହେ ପ୍ରିୟ, ଆଉ ଯିବ ନାହିଁ ବୋଲି କୁହ, ନ ହେଲେ ଯଦି ଯାଅ କେବେ ଫେରିବ ଠିକ୍ କରି କୁହ, ସେ ପର୍ଯ୍ୟନ୍ତ ଜୀବିତ ରହିବି ।' ନାୟିକା ମଧ ଆଲିଙ୍ଗନ ବେଳେ ବିୟୋଗ ଭୟରେ କମ୍ପି ଉଠେ । କାରଣ ନାୟକ ମନ ପୂର୍ଣ୍ଣ ରୂପେ ବୁଝିପାରିବନି ନାୟିକାକୁ ଛାଡ଼ି ଦୂରକୁ କିପରିବା ପାଦ କାଢ଼ିବ ? ନାୟିକା ପକ୍ଷରେ ବିୟୋଗ ଦୁଃଖ ଅତ୍ୟନ୍ତ ପ୍ରବଳ । ଯିଏଯେତେ ବୁଝାଇଲେ ବି ସମ୍ପୂର୍ଣ୍ଣ ନିଷ୍ଫଳ ।

ବିୟୋଗ–ଜନ୍ୟ ବ୍ୟାକୁଳତା ଓ ଦୈନ୍ୟର ଚିତ୍ରଣ କରିବାରେ ମହାକବି ସିଦ୍ଧହସ୍ତ । ସେ ସୂଚିତ କରିଛନ୍ତି ଯେ ବିରହିଣୀର ହୃଦୟ ପ୍ରିୟ ବିୟୋଗରେ ତୀବ୍ରତର ହୋଇ ଉଠେ । ବିୟୋଗ କାଳରେ ବିରହିଣୀ କାମ ରୂପକ ସମୁଦ୍ର ଅଧିକ ବିଶାଳ ହୋଇଯାଏ । ପ୍ରିୟ ଅଭାବରେ ସମୁଦ୍ରକୁ ପାର କରିବା ନିମିତ୍ତ ତା' ନିକଟରେ ସାଧନ ରୂପୀ ନାବର ଅଭାବ ହୁଏ । ଅର୍ଦ୍ଧରାତ୍ରି ସମୟରେ ମନ ତର୍କ ବିତର୍କ କରେ । କାମପୀଡ଼ା ବିରହିଣୀ

ଆଖିରୁ ନିଦ ହଜାଇଦିଏ । ଉପକାରିଣୀ ରାତ୍ରି ସବୁ ଜୀବଙ୍କୁ ତା' କୋଳକୁ ଟାଣିନିଏ, କିନ୍ତୁ ବିରହିଣୀ ହିଁ ଏକଲା ରହିଯାଏ । ଯିବା ସମୟରେ କୌଣସି ବିଷୟରେ ଦେହ, ମନ ଲାଗି ଯିବାରୁ କଷ୍ଟ ଏତେ ବାଧେ ନାହିଁ । ରାତ୍ରିର ନିରୋଳା ସମୟରେ ବିରହିଣୀର ମନ ନାୟକ ନିକଟରେ ନିମିଷକେ ପହଞ୍ଚିଯାଏ । ଫଳରେ ନେତ୍ରରୁ ଅଶ୍ରୁମୋଚନ ହୁଏ । ଅଶ୍ରୁ ଯେତେ ଲୁଚାଇଲେ ବି ତାହା ମନକୁ ମନ ଧାର ଧାର ହୋଇ ବୋହି ଚାଲେ, ଠିକ୍ ଝରଣାଭଳି । ବିୟୋଗ ସମୟରେ ଶରୀରର ପ୍ରତ୍ୟେକ ଅଙ୍ଗ ଉପରେ ପ୍ରଭାବ ଅବଶ୍ୟ ପଡ଼େ, କିନ୍ତୁ ନେତ୍ର ସ୍ଥିତିର ବିଶିଷ୍ଟତା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରେ । ପ୍ରଥମ ମିଳନରେ ନେତ୍ରରେ ପ୍ରିୟ ଦର୍ଶନ କରେ ସେହି ନେତ୍ର ପ୍ରିୟ ଅଦର୍ଶନରେ ଅଶ୍ରୁମୋଚନ କରେ । ନାୟିକା ମନକୁ ମନ ବିଚାର କରେ, ଏହି କାମୁକ ନେତ୍ରଦ୍ୱୟ ବିନା ବିଚାରରେ ପ୍ରେମ କରିଥିଲା, ଏବେ କାହିଁକି ଅଧୈର୍ଯ୍ୟ ହୋଇ ବିଳାପ କରୁଛି । ହୃଦୟରେ ଅସହ୍ୟ ଓ ଅନନ୍ତ କାମବେଦନା ଉତ୍ପନ୍ନ କରୁଛି । ନିଦ୍ରାହୀନ ଓ ବେଦନା ପୀଡ଼ିତ ହୋଇ ନେତ୍ର ଶୁଷ୍କ ହୋଇଯାଉଛି । ଅବଶ୍ୟ ନେତ୍ର ତା'ର ଉଚିତ ଦଣ୍ଡ ପାଉଛି ।

ପ୍ରିୟ ବିୟୋଗର ନିରନ୍ତର ସ୍ମରଣ, ଚିନ୍ତନର ସ୍ୱାଭାବିକ ପରିଣାମ ହେଉଛି ସ୍ୱପ୍ନରେ ପ୍ରିୟଙ୍କୁ ଦର୍ଶନ । ନିଦ୍ରାବସ୍ଥାରେ ଦେଶ କାଳ ସୀମା ପାର ହୋଇ ଅବଚେତନ ଅବସ୍ଥାରେ ପ୍ରିୟ ଦର୍ଶନ ହୁଏ । ଯଦିଓ ସ୍ମରଣରେ ମୂର୍ତ୍ତି ସମ୍ମୁଖକୁ ଆସେ, ତଥାପି ନିଦ୍ରାବସ୍ଥାରେ ପ୍ରିୟଦର୍ଶନର ବିଶେଷ ଆନନ୍ଦ ମିଳେ । ଜାଗ୍ରତ ଅବସ୍ଥାରେ ଅପ୍ରାପ୍ତ ପ୍ରିୟତମ ମୂର୍ତ୍ତି ସ୍ୱପ୍ନରେ ସହଜରେ ନିକଟକୁ ଆସିଯାଏ । ପ୍ରିୟକୁ ନିଜ ବାହୁଯୁଗଳରେ ବାନ୍ଧି ରଖି ଆଲିଙ୍ଗନ କରେ । ନିଦ୍ରା ଭଙ୍ଗ ହେଲେ ମୂର୍ତ୍ତି ଦୂରେଇଯାଇ ହୃଦୟରେ ଲୁଚିଯାଏ । ସ୍ୱପ୍ନାବସ୍ଥା ପ୍ରିୟ ମିଳନର ବାସ୍ତବିକ ଆନନ୍ଦମୟ ସ୍ଥିତି ।

ଜାଗ୍ରତର ନିଷ୍କର୍ଷ ଏହା ଯେ ସ୍ୱପ୍ନ ହିଁ ପ୍ରିୟ ବିୟୋଗର ଏକ ଉପଲବ୍ଧ ସ୍ଥିତି । ଅବଚେତନ ଓ ଚେତନ ଅବସ୍ଥା ମଧ୍ୟରେ ଅବଚେତନର ଗୁରୁତ୍ୱ ଅଧିକ ବିଚାର୍ଯ୍ୟ । ସାମାନ୍ୟ ଜୀବନରେ ଅଭୁତ ଆକାଙ୍କ୍ଷା ସ୍ୱପ୍ନ ମାଧ୍ୟମରେ ଅଧିକ ସନ୍ତୋଷ ପ୍ରଦାନ କରିଥାଏ । ତିରୁବଲ୍ଲୁବର ନାୟିକାର ଦୃଢ଼ ଅବସ୍ଥା, ଭାବର ଅନନ୍ୟତା, ଆଦର୍ଶ ପ୍ରେମର ଶ୍ରେଷ୍ଠ ଉଦାହରଣ ଉଲ୍ଲେଖ କରିଛନ୍ତି । ଏହା ହେଉଛି ଗୃହିଣୀର ବିରହ । ଏହା ଶାନ୍ତ ପ୍ରବାହମାନା ନଦୀ ସଦୃଶ, ଗାମ୍ଭୀର୍ଯ୍ୟଯୁକ୍ତ ଏବଂ ସହଜ ଓ କୋମଳ ଭାବନାରେ ଓତପ୍ରୋତ ଜଡ଼ିତ । ଏହା ରୀତିଯୁଗର ଦରବାରୀ କବିଙ୍କ ବର୍ଣ୍ଣନାଠାରୁ ଭିନ୍ନ ।

ବିରହର ପ୍ରତ୍ୟେକ କ୍ଷଣ ଦୁଃଖଦାୟକ କିନ୍ତୁ ସନ୍ଧ୍ୟା ବିଶେଷ ପୀଡ଼ାଜନକ । ଦିବସରେ କାର୍ଯ୍ୟବ୍ୟସ୍ତ ରହି ସନ୍ଧ୍ୟା ଆସିଲା ମାତ୍ରେ ନାୟିକା ଧୈର୍ଯ୍ୟହରା ହୋଇପଡ଼େ । ସନ୍ଧ୍ୟା ଓ ରାତ୍ରିର ସୂଚନା ହେଉଛି ପ୍ରିୟ ବିରହରେ ରାତ୍ରୀ ପୀଡ଼ା ଓ ବ୍ୟାକୁଳତାର ସମୟ । ପ୍ରିୟତମର ଏହା ମିଳନର ସମୟ ଗୋଠ ଫେରନ୍ତା ଗାଈ ଜଗୁଆଳର ମୂରଲୀ ସ୍ୱନଠାରୁ ଆହୁରି କ୍ଲେଶଦାୟକ ଓ ସଂହାରକ ଅସ୍ତ୍ର ସଦୃଶ ।

ନାୟିକା ନିଜର ସ୍ଥିତିକୁ ଧୀରେ ଧୀରେ ବୁଝିଯାଏ । ପ୍ରିୟର ପ୍ରେମ ଉପରେ ଦୃଢ଼ ଆସ୍ଥା ରଖେ । ପ୍ରବଳ ବିଶ୍ୱାସ ମାଧ୍ୟମରେ ପ୍ରିୟକୁ ସ୍ମରଣ କରିବାକୁ ଲାଗେ । କିଭଳି ଆନନ୍ଦପ୍ରଦ ମଧୁର ଯେତେବେଳେ ସେ ପ୍ରିୟ ସହ ଆଲିଙ୍ଗନରେ ଆବଦ୍ଧ । ଏହି ସ୍ମରଣରେ ସେ ବିୟୋଗର ଦୁଃଖ ପାଶୋରିଯାଏ । ବିୟୋଗରେ ଜୀବନର ଆଧାର ସଂଯୋଗର ମଧୁର ମୁହୂର୍ତ୍ତ ହୋଇଯାଏ । ସେ ମନେ ମନେ କହି ଉଠେ 'ଆମେ ଅଲଗା ନୋହୁଁ ଏକ' ।

ସାମଗ୍ରିକ ଭାବେ ତିରୁବଲ୍ଲୁବରଙ୍କ ଶୃଙ୍ଗାର ବର୍ଣ୍ଣନ ଲୌକିକ ଅଟେ । ନାୟକ ନାୟିକାଙ୍କ ପକ୍ୱ ପ୍ରେମ ଦର୍ଶନର ମାଧ୍ୟମ, ପ୍ରେମର ମାଦକତା, ପ୍ରିୟ ହୃଦୟର ଅଭୂତ ବ୍ୟାକୁଳତା, ପ୍ରିୟ ବିୟୋଗ ଜନିତ ମିଳନର ଉତ୍କଟ ଅଭିଳାଷ ଇତ୍ୟାଦିର ଜୀବନ୍ତ ବର୍ଣ୍ଣନ ସେ କରିଛନ୍ତି । ପୁନଶ୍ଚ ପ୍ରେମରେ ପ୍ରଣୟମାନ ଓ କାଳ୍ପନିକ ଈର୍ଷାର ମଧ୍ୟ ନିଖୁଣ ବର୍ଣ୍ଣନ କରିଛନ୍ତି । ମହାକବି ପ୍ରେମର ସୂକ୍ଷ୍ମତା ଏବଂ ପ୍ରେମୀ ହୃଦୟର କୋମଳତମ ଭାବନାଗୁଡ଼ିକ ଆତ୍ମସାତ୍ କରି ଅଭିବ୍ୟକ୍ତ କରିବାରେ ଜଣେ ସଫଳ ବିନ୍ଧାଣି । ତାଙ୍କ କାବ୍ୟକୃତି କେବଳ ତାମିଲ୍ ସାହିତ୍ୟରେ ସୀମାବଦ୍ଧ ନ ହୋଇ ସମଗ୍ର ଭାରତୀୟ ସାହିତ୍ୟର ଅମୂଲ୍ୟ ସମ୍ପତ୍ତି ଭାବେ ପରିଚିତ ।



# ପଞ୍ଚମ ଅଧ୍ୟାୟ

## ସାମାଜିକ ଜୀବନର ଅଭିବ୍ୟକ୍ତି

କବି ସ୍ରଷ୍ଟା ତାଙ୍କ କାବ୍ୟ କୃତିର ଦିଗ୍‌ଦର୍ଶନ ସମାଜକୁ ବହୁ ପ୍ରଭାବିତ କରିଥାଏ । କାବ୍ୟରେ ସମାଜ ଓ ସାମାଜିକ ଜୀବନର ଅଭିବ୍ୟକ୍ତି ନିଶ୍ଚିତ ଭାବେ ଏକ ସ୍ୱାଭାବିକ ପ୍ରକ୍ରିୟା । ତିରୁବଲ୍ଲୁବର ଜଣେ ଜାଗରୁକ କବି, ଆଦର୍ଶବାଦର ପୋଷକ ଏବଂ ଶ୍ରେଷ୍ଠ ମାନବ ମୂର୍ତ୍ତିର ପରିକଳ୍ପନା ପ୍ରୟାସୀ । ସେ ମାନବ ଜୀବନର ଗୁଣ ଦୋଷକୁ ଅଙ୍ଗୁଳି ନିର୍ଦ୍ଦେଶ କରି ସଫଳ ମାନବ ନିର୍ମାଣ କରିବାରେ ଅତୀବ ଧୂରୀଣ । ଫଳତଃ ସମାଜ ଅନାୟସରେ ବିଶେଷତଃ ତାଙ୍କ କାବ୍ୟକୃତିଦ୍ୱାରା ପ୍ରଭାବିତ ହୋଇଥିଲା । ଦୁଇଟି କୁରଳର ପଙ୍‌କ୍ତି ଉଦ୍ଧାର କରାଯାଇପାରେ ।

୧. ବେଶ୍ୟା, ମଦ୍ୟ ଓ ଦ୍ୟୁତର ମେଳ ସେଠାରେ ଥାଏ ଯାହାଙ୍କୁ ଲକ୍ଷ୍ମୀ ତ୍ୟାଗ କରିଥାନ୍ତି - (ଲକ୍ଷ୍ମୀଛଡ଼ା) ।

୨. ଯେ କୃଷିକାର୍ଯ୍ୟରେ ଅସମର୍ଥ ସେ ଜଣେ ବ୍ୟାପାରୀ । ଜଗତର ସମ୍ପୂର୍ଣ୍ଣ ଆଧାର ହେଉଛି କେବଳ କୃଷକ ।

ମହାକବି ତାଙ୍କ କାବ୍ୟରେ ପୂର୍ବରାଗ, ସ୍ୱତନ୍ତ୍ର ଉନ୍ମୁକ୍ତ ସାମାଜିକ ଜୀବନ, ଦାମ୍ପତ୍ୟ ଜୀବନ ପ୍ରେମ, ପତ୍ନୀଦ୍ୱର ପ୍ରେମ, ବେଶଭୂଷା, ଆଭୂଷଣ, ଶୃଙ୍ଗାର ପ୍ରସାଧନ, ସାମାଜିକ ବିଭାଜନ, ସତ୍ୟମାର୍ଗ ଅନସୃତ ସନ୍ନ୍ୟାସୀ, ଢ଼ୋଙ୍ଗୀ ତପସ୍ୱୀ, ମଦ୍ୟପ, ମାଂସାହାରୀ, ସାମାଜିକ ଜୀବନ ପରିବେଷ୍ଟିତ ଜୁଆ ଓ ବେଶ୍ୟାବୃତ୍ତି, ଔଷଧି ଓ ବନସ୍ପତି ଏବଂ ସର୍ବୋପରି କୃଷିପ୍ରଧାନ ଆଧାରିତ ଆଦର୍ଶୋନ୍ମୁଖ ସମାଜ ପ୍ରଭୃତିର ପୂର୍ଣ୍ଣାଙ୍ଗ ଅବତାରଣା କରିଛନ୍ତି ।

### ତିରୁକୁରଳରେ ଅଭିବ୍ୟକ୍ତ ସମାଜ -

ତିରୁକୁରଳର ସ୍ରଷ୍ଟା ଜଣେ କବି । ସେ ସମାଜକୁ ଅତ୍ୟନ୍ତ ନିକଟରୁ ଦେଖିଥିଲେ ଏବଂ ଭଲଭାବେ ବୁଝିଥିଲେ । ତତ୍‌କାଳୀନ ସମୟ, ସମାଜ ଓ ତାର ପରିସ୍ଥିତି ପ୍ରତି ବିଶେଷ ଜାଗରୁକ ଥିବା ହେତୁ ତାଙ୍କ କାବ୍ୟରେ ସାମାଜିକ ଜୀବନର ନିଖୁଣ ଚିତ୍ର

କାବ୍ୟରେ ପରିସ୍ଫୁଟିତ କରିଛନ୍ତି । ସମାଜକୁ ବିଶିଷ୍ଟ ଦିଗ୍‌ଦର୍ଶନ ମଧ୍ୟ ପ୍ରଦାନ କରିବାକୁ ସେ ସମର୍ଥ ହୋଇଛନ୍ତି । ସାମାଜିକ ଜୀବନର ଏକ ସହଜ ପ୍ରକ୍ରିୟା ଅନାୟସରେ ଉପସ୍ଥାପିତ ହୋଇଛି । ଆପଣାର ସ୍ପଷ୍ଟ ଚିନ୍ତନ, ସୂକ୍ଷ୍ମ ମନୋବୈଜ୍ଞାନିକ ଅଧ୍ୟୟନ କାବ୍ୟରେ ଅଭିବ୍ୟକ୍ତ କରିଛନ୍ତି । ଗୃହସ୍ଥ ଜୀବନରେ ସ୍ତ୍ରୀ ପୁରୁଷର ପାରସ୍ପରିକ ଆକର୍ଷଣ ପୂର୍ବରାଗରେ ଉଲ୍ଲେଖ କରିଛନ୍ତି ।

**ପୂର୍ବରାଗ** – ମହାକବି ତାମିଲ ପରମ୍ପରାଶ୍ରିତ ଢ଼ଙ୍ଗରେ ପ୍ରେମର ଦୁଇ ପ୍ରକାର ରୂପ ବର୍ଣ୍ଣନା କରିଛନ୍ତି । ପ୍ରଥମଟି ପୂର୍ବରାଗ ଓ ଦ୍ୱିତୀୟଟି ଦାମ୍ପତ୍ୟ ପ୍ରେମ । ପୂର୍ବରାଗ ହେଉଛି ବିବାହ ପୂର୍ବ ପ୍ରେମ ଜୀବନ । ଯୁବକ ଯୁବତୀ ପ୍ରେମ ସମ୍ବନ୍ଧ ସ୍ଥାପିତ କରିବା ପାଇଁ ଯଥେଷ୍ଟ ସ୍ୱାତନ୍ତ୍ର୍ୟ ପାଇଥାନ୍ତି । ତଥାପି ସେ ସମୟରେ ଗାନ୍ଧର୍ବ ବିବାହ ପାଇଁ ସାମାଜିକ ଅନୁମୋଦନ ଅତ୍ୟନ୍ତ ସରଳ ନ ଥିଲା । ଶାରୀରିକ ଆକର୍ଷଣରେ ବନ୍ଧା ହେବା ଯୋଗୁଁ ଯୁବକ ଯୁବତୀଙ୍କ ହୃଦୟରେ ଅନେକ ଭାବ ଉଦୟ ହେଉଥାଏ । ତଥାପି ଯୁବତୀର ସ୍ୱାଭାବିକ ଲଜ୍ୟାଶୀଳତା ଓ ସଙ୍କେତଯୁକ୍ତ ଦୃଷ୍ଟିରେ ଲୁକ୍କାୟିତ ଆନନ୍ଦ ବିଷୟ କବି ଉଲ୍ଲେଖ କରିଛନ୍ତି । ସେ ନାୟକ ଚକ୍ଷୁରେ ସିଧା ନିଜର ଚକ୍ଷୁ ମିଶାଇପାରେ ନାହିଁ, ପୃଥିବୀକୁ ମଥାନତ କରି ବସି ରହେ ଓ ମନ୍ଦ ମନ୍ଦ ହସୁଥାଏ ଏବଂ ଅପରିଚିତ ବ୍ୟକ୍ତିଭଳି ବାର୍ତ୍ତାଳାପ କରେ । ଏକାନ୍ତ ମିଳନ, ଆକର୍ଷଣ, ପ୍ରେମର ସ୍ଥିତି ସ୍ୱାଭାବିକ ଅଟେ ।

ଏକାନ୍ତ ମିଳନରେ ହୃଦୟର ଆକର୍ଷଣ ଯୋଗୁଁ ପ୍ରେମ ବିକଶିତ ହୁଏ, ଫଳତଃ ନାୟକ ନାୟିକାଙ୍କ ଶାରୀରିକ ସମ୍ବନ୍ଧ ସ୍ଥାପିତ ହେବାକୁ ଲାଗେ । ଶାରୀରିକ ସମ୍ବନ୍ଧ ଏକ ଅଦ୍ଭୂତ କ୍ରିୟା । ଏହା କ୍ରମେ ମନୁଷ୍ୟକୁ ଅଜ୍ଞାନ ସ୍ତରକୁ ଟାଣିନିଏ, କବି ସ୍ପଷ୍ଟ ଭାବେ ସ୍ୱ ମତ ପ୍ରକାଶ କରିଛନ୍ତି ।

**ଦାମ୍ପତ୍ୟ ଜୀବନ** – ତିରୁବଲ୍ଲୁବର ସାମାଜିକ ଜୀବନ ସ୍ଥିରତା ଦୃଷ୍ଟିରୁ ଦାମ୍ପତ୍ୟ ଜୀବନକୁ ସ୍ୱୀକାର କରିଥିଲେ । ସେ ସମୟରେ ଗୃହସ୍ଥ ଧର୍ମକୁ ଅଧିକ ମାନ୍ୟତା ଦିଆଯାଉଥିଲା ଏବଂ ସର୍ବ ସମ୍ମତ ଦାମ୍ପତ୍ୟ ଜୀବନର କିନ୍ତୁ ଆଦର ଥିଲା ଏବଂ ଗୃହସ୍ଥାଶ୍ରମ ଅନ୍ୟ ଆଶ୍ରମ ଅପେକ୍ଷା ଶ୍ରେଷ୍ଠ ବୋଲି ଗଣ୍ୟ ହେଉଥିଲା । କାରଣ ସାଧୁ , ନିର୍ଦ୍ଧନ, ସନ୍ନ୍ୟାସୀ, ନିରାଶ୍ରୟମାନେ ଗୃହସ୍ଥାଶ୍ରମ ଉପରେ ନିର୍ଭର କରୁଥିଲେ । ଗୃହସ୍ଥର ମୁଖ୍ୟ କର୍ତ୍ତବ୍ୟ ଥିଲା ଅତିଥି ସତ୍କାର, ଧନ ଦାନ ଓ ସନ୍ତାନ ଉତ୍ପତ୍ତି ।

ସନ୍ତାନର ଲାଳନ ପାଳନ କରି ନିଷ୍କଳଙ୍କ ଓ ସଚ୍ଚରିତ୍ର ନାଗରିକ ସୃଷ୍ଟି କରିବା ଗୃହସ୍ଥର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ । ବୁଦ୍ଧିମାନ, ଜ୍ଞାନୀ ସନ୍ତାନ ହେଉଛି ଗୃହସ୍ଥର ଅସଲ ଧନ ସମ୍ପତ୍ତି । ପରିବାରରେ ବାସ୍ତବିକ ସନ୍ତାନ ମଧୁର ଓ ଉଲ୍ଲାସ ଭରିଦେଇଥାଏ । ଶିଶୁଟିର ମଧୁର କଥା, ଖେଳକୁଦ ଇତ୍ୟାଦି ପରିବାରରେ ପୂର୍ଣ୍ଣତା ଆଣି ଦେଇଥାଏ ସୁଖ ଓ ଆନନ୍ଦର ବର୍ଷା କରିଥାଏ ।

ଧର୍ମ କାର୍ଯ୍ୟରେ ପତିକୁ ସାହାଯ୍ୟ କରିବା, ପତିର ପ୍ରମୁଖ ଗୁଣର ବିକାଶ କରିବା, ପତିର ସାମର୍ଥ୍ୟ ଅନୁସାରେ ଅତିଥି ସେବା କରିବା, ସୁଦୃଢ଼ ସତୀତ୍ୱ ରକ୍ଷା କରିବା ଓ ନିଜର ମର୍ଯ୍ୟାଦା ରକ୍ଷା କରିବା ପତ୍ନୀର ପ୍ରମୁଖ କର୍ତ୍ତବ୍ୟ ବୋଲି ବିବେଚନ କରାଯାଉଥିଲା । ଯଦି କୌଣସି ପତ୍ନୀ ପରପୁରୁଷ ଅନୁରକ୍ତ ହେଲେ ସେ ପରିବାର ଓ ସମାଜରେ ନିନ୍ଦନୀୟ ଓ ଦଣ୍ଡନୀୟ ହେଉଥିଲା । ସଦ୍‌ଗୁଣ ସମ୍ପନ୍ନା ଗୃହିଣୀ ସମସ୍ତ ମାଙ୍ଗଳିକ କାର୍ଯ୍ୟରେ ମର୍ଯ୍ୟାଦିତ ହେଉଥିଲା । ପତ୍ନୀ ହେଉଛି ମଣି ରତ୍ନ । ତା'ଯୋଗୁଁ ଯେକୌଣସି ପୁରୁଷ ସିଂହ ହୁଏ କିମ୍ବା ପୁରୁଷ ମେଷରେ ପରିଣତ ହୁଏ ।

## ପତ୍ନୀତର ପ୍ରେମ - (ନିଷିଦ୍ଧ ପ୍ରେମ) :

ଗୃହସ୍ଥର ମର୍ଯ୍ୟାଦା ରକ୍ଷା କରିବା ତତ୍‌କାଳୀନ ସାମାଜିକ ଜୀବନର ମୁଖ୍ୟ ପ୍ରସଙ୍ଗ ଥିଲା । ଯଦାତଦା ଏ ମର୍ଯ୍ୟାଦାର ଉଲଙ୍ଘନ ହେବାର ଦେଖା ଯାଇଥାଏ; ଯଦ୍ୱାରା ସାମାଜିକ ଶୃଙ୍ଖଳା ବିପର୍ଯ୍ୟୟ ହୋଇଯାଏ । ଅଧର୍ମ ପଥଗାମୀ ପୁରୁଷ ପରସ୍ତ୍ରୀ ଦ୍ୱାରଦେଶରେ ଅପେକ୍ଷା କରି ଠିଆ ହେବା ଯେପରି ନିନ୍ଦନୀୟ, ତଦ୍ରୁପରି ସ୍ତ୍ରୀ ଲୋକଟି ମଧ୍ୟ ସମାଜରେ ନିନ୍ଦା ଓ ଘୃଣାର ପାତ୍ରୀ ବୋଲି ଗଣ୍ୟ ହୋଇଥାଏ । ଧର୍ମପରାୟଣ ଗୃହସ୍ଥମର୍ଯ୍ୟାଦାର ଉଲଙ୍ଘନ କେବେହେଁ କରେ ନାହିଁ । ପୁରୁଷ ଓ ସ୍ତ୍ରୀ ଉଭୟ ଗୃହସ୍ଥ ଜୀବନର ଦାୟିତ୍ୱ ଓ ନିଷ୍ଠା ରକ୍ଷା କରନ୍ତି ଏବଂ ସମାଜକୁ ସୁରକ୍ଷା ପ୍ରଦାନ କରନ୍ତି ।

## ବେଶଭୂଷା, ଆଭୂଷଣ, ଶୃଙ୍ଗାର, ପ୍ରସାଧାନ ଆଦି :

ସେ ସମୟରେ ଆଭୂଷଣ ବିଶେଷ ପ୍ରଣିଧାନ ଯୋଗ୍ୟ । କୃଷିପ୍ରଧାନ ଦେଶର ମୁଖ୍ୟ ଆଭୂଷଣ ହେଲା ପୁଷ୍ପ ଆଭୂଷଣ । ପୁଷ୍ପ ହେଉଛି ଆଶାର ପ୍ରାକୃତିକ ବୈଭବ ନାରୀର କେଶ ପୁଷ୍ପରେ ଗ୍ରନ୍ଥିତ ବିଶେଷ ଭାବେ ଶିରୀଷ ପୁଷ୍ପ । ନାରୀମାନେ ନିଜର ସୌନ୍ଦର୍ଯ୍ୟ ବୃଦ୍ଧି ସକାଶେ ଆଭୂଷଣ ଆଭରଣ କରନ୍ତି, ଯଥା- ସ୍ୱର୍ଣ୍ଣକୁଣ୍ଡଳ ଓ

ପୁଷ୍ପଗୁଚ୍ଛ । ଆଭୂଷଣ ମଧ୍ୟରେ ଚୁଡ଼ି ପ୍ରଧାନ; ମାଳା ଅର୍ଥାତ୍ ଶୃଙ୍ଖଳାବଦ୍ଧ ଚୂଡ଼ିମାଳା ଓ ନାରୀଙ୍କ ଦ୍ୱିତୀୟ ସୌନ୍ଦର୍ଯ୍ୟ ପ୍ରସାଧନ ହେଉଛି କଜ୍ଜ୍ୱଳ ( ଅଞ୍ଜନ ) । ଅଂଜନ ପୂର୍ଣ୍ଣ ନୟନରେ ପ୍ରିୟତମଙ୍କ ନିକଟକୁ ଆକର୍ଷଣ କରିବେ ବୋଲି ପ୍ରେୟସୀ ନିଜକୁ ଶୃଙ୍ଗାର ପ୍ରସାଧନରେ ସଜ୍ଜିତ ହୋଇ ରହନ୍ତି । ପୁଷ୍ପ ଓ ଅଞ୍ଜନ ଦୁଇଟି ମୁଖ୍ୟ ପ୍ରସାଧାନ ରୂପେ କୁରଳରେ ବର୍ଣ୍ଣିତ ହୋଇଛି ।

**ସାମାଜିକ ବିଭାଜନ** - ଗୃହସ୍ଥଙ୍କ ପ୍ରମୁଖ କର୍ତ୍ତବ୍ୟ ହେଉଛି ସାଧୁ, ନିର୍ଦ୍ଧନ, ନିରାଶ୍ରିତମାନଙ୍କୁ ସହାୟତା କରିବା ପାଇଁ ନିଷ୍ପାପଭାବେ ଧନ ସଂଗ୍ରହ କରିବା । ଗୃହସ୍ଥ ଜୀବନ ବ୍ୟତୀତ ସନ୍ନ୍ୟାସୀ ଓ ତପସ୍ୱୀମାନଙ୍କୁ ଅଧିକ ସମ୍ମାନ ଦିଆଯାଉଥିଲା ସେ ସମୟ ସମାଜରେ । ସେମାନେ ମଣ୍ଡେନ୍ଦ୍ରିୟ ବାସନା ପରିତ୍ୟାଗ କରି 'ସ୍ୱ'ର ଅନ୍ୱେଷଣରେ ରହୁଥିଲେ । 'ମୁଁ', ମୋର ଅହଙ୍କାର ଦମନ କରି ଗୃହସ୍ଥଙ୍କୁ ବନ୍ଧନ ମୁକ୍ତ କରିଥାନ୍ତି । ତେଣୁ ସମାଜରେ ସାଧୁ ମହାତ୍ମାମାନଙ୍କ ସମ୍ମାନ ଓ ଆଦର କରାଯାଇଥାଏ । ସେମାନଙ୍କୁ ଭରଣ ପୋଷଣ ଦାୟିତ୍ୱ ଗୃହସ୍ଥର ରହିଥାଏ । ଗୃହସ୍ଥ ସେମାନଙ୍କଠାରୁ ସତ୍ୟ ଓ ତ୍ୟାଗର ମହିମା ଶିକ୍ଷାଲାଭ କରନ୍ତି । ସଦାଚାର ପଥରେ ଗୃହସ୍ଥ ଅଗ୍ରସର ହୁଏ । ଫଳରେ ତ୍ୟାଗୀ ହୁଅନ୍ତି ଓ ବନ୍ଧନ ମୁକ୍ତ ହୁଅନ୍ତି ଗୃହସ୍ଥ । ମହାକବି ବଲ୍ଲୁବର କେତେକ ଢୋଙ୍ଗୀ ସନ୍ନ୍ୟାସୀଙ୍କ ବିଷୟ ଉଲ୍ଲେଖ କରିଛନ୍ତି । ସତ୍ କର୍ମ ଓ ଦୁଷ୍କର୍ମ ପ୍ରତି ଲକ୍ଷ୍ୟ କରିବା ସମସ୍ତଙ୍କ କର୍ତ୍ତବ୍ୟ । ଅନ୍ତଃକରଣ ଶୁଦ୍ଧି ଓ ସତ୍ କର୍ମ ତପସ୍ୱୀମାନଙ୍କ ଅନିବାର୍ଯ୍ୟ ଲକ୍ଷଣ ।

**ଭୋଜନ - ପାନ :**

ଦେଶ ପ୍ରଧାନତଃ କୃଷିପ୍ରଧାନ ଅଟେ । କୃଷିଜାତ ଦ୍ରବ୍ୟ ଯାହା ଉପଲବ୍ଧ ହୁଏ ତାହା ଲୋକଙ୍କ ମୁଖ୍ୟ ଖାଦ୍ୟ କିନ୍ତୁ ଲୋକମାନେ ଶାକାହାରୀ ଓ ମାଂସାହାରୀ ଉଭୟ ଶ୍ରେଣୀ ଦେଖାଯାଆନ୍ତି । ମାଂସାହାର ପାଇଁ ସମାଜରେ ବିଶେଷ ସ୍ୱୀକୃତି ମିଳି ନଥାଏ । ଅଂହିସା ଓ ଧର୍ମ ଏହାର କାରଣ ଯୋଗୁଁ ନିଷେଧ କରାଯାଇଥାଏ । ସମାଜରେ ଶାକାହାରୀ ଲୋକ ମାଂସାହରୀଠାରୁ ବିଶେଷ ସମ୍ମାନୀତ ହୁଅନ୍ତି ।

ସେ ସମୟରେ ମଦ୍ୟପାନକୁ ପ୍ରବଳ ବିରୋଧ ମଧ୍ୟ କରାଯାଉଥିଲା, କାରଣ ମଦ୍ୟପାନ ଯୋଗୁଁ ଲୋକମାନେ ଦୁର୍ଦ୍ଦଶାଗ୍ରସ୍ତ ହେଉଥିଲେ । ମଦ୍ୟପ ନିଜ ନିୟନ୍ତ୍ରଣରେ କେଉଁଠି ରହୁ ନ ଥିଲା । ମଦ୍ୟପକୁ ବୁଦ୍ଧିମାନ ଲୋକ ବିଷଭଳି ଜ୍ଞାନ କରୁଥିଲା । ଛପି ଛପି ମଦ୍ୟପାନ କରିବା ଲୋକଙ୍କୁ ନିବୃତ୍ତ କରିବା କଷ୍ଟକର ଥିଲା । ଯେପରି ଜଳମଗ୍ନ

ଲୋକକୁ ଦୀପ ନେଇ ଖୋଜିବା ସଙ୍ଗେ ସମାନ । ମଦ୍ୟପର ଶାରୀରିକ ଓ ମାନସିକ ସ୍ଥିତିର ପତନ ଅନିବାର୍ଯ୍ୟ ହେଉଥିଲା ।

**ସାମାଜିକ ବିଲକ୍ଷଣ :** ତିରୁବଲ୍ଲୁବରଙ୍କ ସମୟରେ ସାମାଜିକ ଜୀବନ ସୁ-ଗଠିତ ଓ ସୁନିୟୋଜିତ ଥିଲା । ତଥାପି ମାନବ ସ୍ୱଭାବ ବଡ଼ ବିଚିତ୍ର । ସେ କେତେବେଳେ କେଉଁ କର୍ମ କରିବସେ ତା'ର ଆକଳନ କରିବା କଷ୍ଟକର । ମନୁଷ୍ୟର ଶାରୀରିକ ଓ ମାନସିକ ବିକୃତି ଭାବ ଯୋଗୁଁ ସମାଜରେ ମଦ୍ୟପାନ, ଚୌର୍ଯ୍ୟ ବୃତ୍ତି ଓ ବେଶ୍ୟା ଗମନ ମଧ୍ୟ ଦୃଷ୍ଟି ଗୋଚର ହେଉଥିଲା । କାବ୍ୟରେ ଦ୍ୟୁତଶାଳା, ବେଶ୍ୟାଳୟ ପ୍ରଭୃତି ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି । ଜୁଆ ଖେଳଦ୍ୱାରା ଶତ୍ରୁର ଧନ ଅପହରଣ କରାଯାଉଥିଲା । ଜୁଆ ଦ୍ୱାରା ଧନ, ବସ୍ତ୍ର, ଭୋଜନ, ଯଶ ସଦାଚାର ଆଦି ବିନଷ୍ଟ ହେଉଥିଲା । ଜୁଆରେ ବିଜୟ ହାସଲ କରିବା ମାନସିକତାକୁ କବି ସତର୍କ କରାଇଛନ୍ତି । ଜୁଆ ଖେଳ ଏକ ମହାବିପତ୍ତିର କାରଣ ।

ବେଶ୍ୟା ବୃତ୍ତି ଧନ ଉପାର୍ଜନ ନିମିତ୍ତ ଶରୀର ବିକ୍ରୟ । ବେଶ୍ୟା ଚତୁରତାରେ ପ୍ରବୀଣା । ନିଜ ଉଦ୍ଦେଶ୍ୟ ସାଧନ ନିମିତ୍ତ ମଧୁର ଭାଷଣ, ନର୍ତ୍ତନ, ଗାନ ଓ ସୌନ୍ଦର୍ଯ୍ୟ ପ୍ରସାଧାନରେ ପୁରୁଷଙ୍କୁ ଆକର୍ଷଣ କରିଥାଏ, ବେଶ୍ୟାର ସମାଜରେ କୌଣସି ପ୍ରକାର ସ୍ଥାନ ନାହିଁ । ତା'ଠାରୁ ଦୂରରେ ରହିବା ପାଇଁ ସମସ୍ତେ ସତର୍କ କରନ୍ତି । ବେଶ୍ୟା ଆଚରଣହୀନ, ମାୟାବିନୀ, ମୋହିନୀ, ଧନଲୋଲୁପୀ । ଯେଉଁ ପୁରୁଷ ବେଶ୍ୟାସକ୍ତ ସେ ଅଜ୍ଞାନୀ, ପତିତ ଓ ଦୁର୍ବଳ ହୃଦୟ ବ୍ୟକ୍ତି । କୌଣସି ଜ୍ଞାନ-ସମ୍ପନ୍ନ, ବିଶିଷ୍ଟ ବୁଦ୍ଧିମାନ ବ୍ୟକ୍ତି ସାମନ୍ୟ ସ୍ତ୍ରୀର ତୁଚ୍ଛ ସୌନ୍ଦର୍ଯ୍ୟପ୍ରତି ଅନାକୃଷ୍ଟ ରହେ । ବେଶ୍ୟା, ମଦ୍ୟ ଓ ଜୁଆ ଆସକ୍ତ ବ୍ୟକ୍ତିକୁ ଲକ୍ଷ୍ମୀ ପରିତ୍ୟାଗ କରିଥାନ୍ତି ।

**ଔଷଧି** - କବି ତିରୁବଲ୍ଲୁବର ଆୟୁର୍ବେଦ ବିକାଶ ସମୟରେ ଯେ ହୋଇଥିଲା ତା'ର ସମ୍ୟକ୍ ସୂଚନା ତାଙ୍କ କାବ୍ୟରେ ଦେଇଛନ୍ତି । ରୋଗ ଓ ତା'ର ନିବାରଣ ଏବଂ ବୈଦ୍ୟ ଶାସ୍ତ୍ରର ବର୍ଗୀକରଣ ଆଲୋଚନା କରିଛନ୍ତି ଯଥା- ରୋଗୀ, ବୈଦ୍ୟ, ଔଷଧି ଓ ପରୀକ୍ଷଣ । ଔଷଧ ପ୍ରସ୍ତୁତିକରଣ ପାଇଁ ପ୍ରଶିକ୍ଷିତ ବ୍ୟକ୍ତିର ଆବଶ୍ୟକତା ନିତାନ୍ତ ଜରୁରୀ । ରୋଗର ପ୍ରମୁଖ କାରଣ ହେଲା ବାତ,ପିତ,କଫ । ଏଥି ମଧ୍ୟରୁ ଗୋଟିଏ କମ୍ କିମ୍ବା ବେଶୀ ହେଲେ ରୋଗ ସୃଷ୍ଟି ହୁଏ । ବୈଦ୍ୟର ଦାୟିତ୍ୱ ହେଉଛି ଲକ୍ଷଣ ଦେଖି ରୋଗ ନିରୂପଣ କରିବା ଏବଂ ରୋଗର କାରଣ ଅନ୍ୱେଷଣ କରି ତାର ନିବାରଣ ନିମିତ୍ତ ଅନୁକୂଳ ଉପଚାର କରିବା । ଏହି ସମସ୍ତ ପ୍ରକ୍ରିୟାରେ ରୋଗୀ

ବୟସ, ରୋଗର ତୀବ୍ରତା ଅନୁଧ୍ୟାନ ଓ ସମୟ ଉପରେ ଧ୍ୟାନ ନିବେଶର ଅତ୍ୟନ୍ତ ଆବଶ୍ୟକତା । ସେ ସମୟରେ ଭେଷଜ ଶାସ୍ତ୍ରର ଉନ୍ନତି ଯେ ନିଶ୍ଚିନ୍ତ ହୋଇଥିଲା, ଏହା ସର୍ବାଦୌ ସ୍ୱୀକାର୍ଯ୍ୟ ।

ଯେକୌଣସି ରୋଗରୁ ମୁକ୍ତ ହେବା ପାଇଁ ପ୍ରଥମ ଉପାୟ ହେଉଛି ମିତ ଆହାର । ପାକ ସିଦ୍ଧ ହେଲାପରେ ଭୋଜନ ଗ୍ରହଣ, କ୍ଷୁଧା ହେଲାପରେ ଯାଇ ଖାଦ୍ୟର ପରିମାଣ ନିର୍ଣ୍ଣୟ, ଉପଯୁକ୍ତ ପେୟ ସେବନ, ସ୍ୱାସ୍ଥ୍ୟ ସୁଖର ଉପଯୁକ୍ତ ଚର୍ଯ୍ୟା ଓ ଦୀର୍ଘଜୀବି ହେବାର ମାର୍ଗ ନିର୍ଣ୍ଣୟ ।

**କୃଷି ଓ କୃଷକ** - କବିଙ୍କ ସମୟରେ ସମାଜ ସମ୍ପୂର୍ଣ୍ଣ କୃଷିଭିତ୍ତିକ ଥିଲା । କାବ୍ୟର ମୁଖ୍ୟ ସାମାଜିକ ପ୍ରସଙ୍ଗ କୃଷି ହିଁ ଥିଲା । ବର୍ଷା ହିଁ କୃଷିର ଜୀବନ । ବଲ୍ଲୁବରଙ୍କ ମତରେ କୃଷି ସବୁ ଜୀବିକା ମଧ୍ୟରେ ଶ୍ରେଷ୍ଠ । କୃଷି କାର୍ଯ୍ୟ ଅତ୍ୟନ୍ତ କଷ୍ଟପ୍ରଦ, ଏହା ଶରୀର ଶ୍ରମ ଉପରେ ନିର୍ଭର କରେ । କୃଷି କାର୍ଯ୍ୟରେ ମନୁଷ୍ୟର ସ୍ୱାସ୍ଥ୍ୟ ସନ୍ତୁଳିତ ହୁଏ । ସଂସାର ଅନ୍ନ ଉପରେ ଆଶ୍ରିତ, ସଂସାରର ସମସ୍ତ ଭାର କୃଷକ ହିଁ ବହନ କରେ । ଏହା ଅତ୍ୟନ୍ତ ସଚ୍ଚୋଟ କର୍ମ । ରାଜା, ପ୍ରଜା, ଭୋଗୀ, ତ୍ୟାଗୀ ସଂସାର ସମସ୍ତ ଶରୀରଧାରୀ ମନୁଷ୍ୟ ଅନ୍ନ ଉପରେ ନିର୍ଭର କରନ୍ତି । କୃଷି କର୍ମ ଲାଭ ଓ କ୍ଷତି ଉପରେ କରାଯାଏ ନାହିଁ । ଶ୍ରମର ଆନନ୍ଦ ପାଇଁ କେବଳ କରାଯାଏ । ଏକ ସାଙ୍ଗରେ ରାଜା ଓ ଋଷି ଜନକ କୃଷି କର୍ମକୁ ଅନାସକ୍ତ ଭାବେ ସମ୍ପନ୍ନ କରୁଥିଲେ । କବି ତାଙ୍କ କାବ୍ୟରେ ଈଶ୍ୱର ବନ୍ଦନା ଉପରାନ୍ତ ବର୍ଷାର ମହତ୍ତ୍ୱ ବର୍ଣ୍ଣନାରେ ନିଜକୁ ନିମଗ୍ନ କରିଦେଇଥିଲେ । ବର୍ଷା ସହ ଅନ୍ନର ସମ୍ପର୍କ, ବର୍ଷା ସହ ଜୀବନର ସମ୍ପର୍କ ଅଭିନ୍ନ - ଏହା ଉଲ୍ଲେଖ କରିଛନ୍ତି । ସଂସାରର ଅସ୍ତିତ୍ୱ ବର୍ଷାଦ୍ୱାରା ଜାଗ୍ରତ ହେବା ଯୋଗୁଁ ମନୁଷ୍ୟର ବାସ୍ତବିକ ସୁଖ ଉତ୍ପନ୍ନ ହୁଏ । ଜଳଦର ଜଳହାନୀରେ ପୃଥିବୀରେ ଅନ୍ନ ହାନୀ ହୁଏ, ସମୁଦ୍ର ଜଳ ଶୁଷ୍କ ହୋଇଯାଏ । ବର୍ଷା ଅଭାବରୁ ବିଶାଳ ବସୁଧାର ଦାନ ଓ ତପସ୍ୟା ଲୋପ ହୋଇଯାଇ ସଂସାରରେ ଜୀବନର ସମ୍ଭାବନାର ଅନ୍ତ ଘଟେ ।

ସାମାଜିକ ଜୀବନରେ ଏହି ଚିତ୍ର କବିଙ୍କ ବ୍ୟାବହାରିକ ଜୀବନରେ ଉଦ୍‌ଘାଟିତ ହୋଇଅଛି । ପ୍ରାଚୀନ ତାମିଲ୍ ପ୍ରଦେଶରେ ଜୀବନର ପ୍ରାମାଣିକ ରୂପ ଏଥିରେ ଉପଲବ୍ଧ ହୋଇଅଛି । ଧର୍ମ ଆଦୃତ ଜୀବନକୁ କବି ଅଧିକ ସ୍ୱୀକାର କରି ଦ୍ୟୁତକ୍ରୀଡା ଇତ୍ୟାଦିକୁ ଅସ୍ୱୀକାର କରିଛନ୍ତି ।



# ଷଷ୍ଠ ଅଧ୍ୟାୟ

## ତିରୁବଲ୍ଲୁବର ଓ ଭାରତୀୟ ଚିନ୍ତନ

ସାଂସ୍କୃତିକ ଦୃଷ୍ଟିକୋଣରୁ ଭାରତ ଅଖଣ୍ଡ । ରାଷ୍ଟ୍ରୀୟ ଏକତାକୁ ଆଧାରକୁ ଭିତ୍ତିକରି ସାଂସ୍କୃତିକ ଭାବାତ୍ମକ ଏକତା ସୃଷ୍ଟି ହୁଏ । ଭିନ୍ନତ୍ୱ ମଧ୍ୟରେ ଏକତ୍ୱର ପରିଚୟ ବର୍ତ୍ତମାନ ପରିସ୍ଥିତିରେ ଭାରତ ଦେଶ ନିମିତ୍ତ ଆବଶ୍ୟକତା ଅନିବାର୍ଯ୍ୟ । ଭାଷା ରଚନାତ୍ମକ ଓ ଭୌଗଳିକ ବିବିଧତା ସତ୍ତ୍ୱେ ମଧ ମହାଭାରତ, ମନୁସ୍ମୃତି ଓ କୌଟିଲ୍ୟ ଅର୍ଥଶାସ୍ତ୍ର ଭାବସାମ୍ୟର ଏକତ୍ୱ ସ୍ୱଷ୍ଟତଃ ପ୍ରାମାଣିକ ଗ୍ରନ୍ଥ ଭାବେ ଏପର୍ଯ୍ୟନ୍ତ ବିଦ୍ୟମାନ । ବୈଜ୍ଞାନିକ ଦୃଷ୍ଟି କୋଣରୁ ସାମ୍ୟ ବିଚାର ପ୍ରସ୍ତୁତ କରାଯାଇଛି । ଭାରତବର୍ଷରେ ଉତ୍ତର ଓ ଦକ୍ଷିଣ ଭାଗରେ ବିଦ୍ୟମାନ ବିଚାରଧାରା, ସାଂସ୍କୃତିକ ଓ ଦାର୍ଶନିକ ଏକତା ଓ ସାମ୍ୟଭାବ ଅନୁଭୂତ ହୋଇଛି ଏହି କାବ୍ୟରେ । ମହାନ ଦେଶର ଅଖଣ୍ଡତା, ଏକତା ଓ ସାମ୍ୟଭାବ ଏହି ଗ୍ରନ୍ଥର ବିଭିନ୍ନ ଅଂଶରେ କିପରି ପରିବେଶିତ ହୋଇଛି ତା'ର ଉଦ୍‌ଘାଟନ କରିବା ପ୍ରଧାନ ଲକ୍ଷ୍ୟ ।

୧. ଦିବସରେ କାକ ପେଚକ ଉପରେ ବିଜୟ ପ୍ରାପ୍ତ କରେ । ଶତ୍ରୁ ଉପରେ ବିଜୟଲାଭ କରିବାକୁ ହେଲେ ନୃପ ଅର୍ଥାତ୍ ନେତା ଉପଯୁକ୍ତ ଅବସର ଆବଶ୍ୟକତା ଅଛି ।

ଭାରତୀୟ ଚିନ୍ତନର ଆବଶ୍ୟକତା, ସହନତା ଏବଂ ନିରନ୍ତରତା ମୂଳରେ ଭାବାତ୍ମକ ଏକତାକୁ ଉଦ୍‌ଘାଟିତ କରିବା ପାଇଁ ଉଦ୍ୟମ କରାଯାଉଛି । ମହାଭାରତ, ମନୁସ୍ମୃତି ଏବଂ କୈଟିଲ୍ୟ ଅର୍ଥଶାସ୍ତ୍ର ସହିତ ଭାବସାମ୍ୟ ଦର୍ଶନର କିଛି ଅଂଶ ଅଧ୍ୟୟନ ନିମିତ୍ତ ସଙ୍କେତ ପ୍ରଦାନ କରାଯାଇଛି ।

**ତିରୁକ୍କୁରଳ ଓ ମହାଭାରତ** – ମହାଭାରତର ମହିମା ଜଗତବିଖ୍ୟାତ । ଅଖିଳ ଜ୍ଞାନର ଭଣ୍ଡାର ରୂପେ ଭାରତୀୟ ଓ ବିଦେଶୀ ବିଦ୍ୱାନଙ୍କଦ୍ୱାରା ବହୁଳ ଆଦୃତ । ଆକାରର ବିଶାଳତା ଓ ବିଷୟର ବ୍ୟାପକତା ଦୃଷ୍ଟିରୁ ମହାଭାରତ ଭାରତର

ସଂସ୍କୃତିରେ ବିଶ୍ୱକୋଷ ଭାବେ ପରିଚିତ। 'ଯାହା ନାହିଁ ଭାରତେ ତାହା ନାହିଁ ମରତେ' ପ୍ରଚଳିତ ଲୋକକଥାର ଯଥାର୍ଥତା ପ୍ରତିପାଦନ କରେ। ତିରୁକୁରଳରେ ସୂଚିତ ଧର୍ମ, ଅର୍ଥ ଓ କାମର କତିପୟ ଅଂଶର ଅଦ୍ଭୁତ ସାମଞ୍ଜସ୍ୟ ବିଦ୍ୟମାନ। ମହାନ୍ ଗ୍ରନ୍ଥଦ୍ୱୟରେ ଭାରତୀୟ ସାଂସ୍କୃତିକ ଧାରାର ଆକଳନ ସମ୍ଭବ ହୋଇଛି। ମହାଭାରତ ନିଜସ୍ୱ ବିଶାଳତା ନିମିତ୍ତ ଯେପରି ପ୍ରସିଦ୍ଧ, ତିରୁକୁରଳ ସଂକ୍ଷିପ୍ତ ରୂପରେ ନିଜସ୍ୱ ଢ଼ଙ୍ଗର ଅଭିବ୍ୟକ୍ତି ନିମିତ୍ତ ସେପରି ବିଖ୍ୟାତ। ଗ୍ରନ୍ଥଦ୍ୱୟର କିଛି ଅଂଶ ଯଦି ଉଦ୍ଧୃତ କରାଯାଏ, ତେବେ ଭାବସାମ୍ୟ ପ୍ରତ୍ୟକ୍ଷ ହୁଏ।

ଗୃହସ୍ଥ ଧର୍ମ ଶୀର୍ଷକ ଅନ୍ତର୍ଗତ ବଲ୍ଲୁବରଙ୍କ କଥନ ହେଉଛି- ଗୃହସ୍ଥ ଅନ୍ୟ ତିନୋଟି ଆଶ୍ରମର ଧର୍ମାନୁକୂଳ ଜୀବନ ବ୍ୟତୀତ କରିବା ନିମିତ୍ତ ସ୍ଥାୟୀ ସହାୟକ ଅଟେ। ମହାଭାରତରେ ଗୃହସ୍ଥର ମହତ୍ତ୍ୱ ପର୍ଯ୍ୟାପ୍ତ ଭାବେ ସ୍ୱୀକୃତ ହୋଇଛି।

୧. ଯଥା ମାତରମାଶ୍ରିତ୍ୟ ସର୍ବେ ଜୀବନ୍ତି ଜନ୍ତବ ।
ଏବଂ ଗୃହସ୍ଥମାଶ୍ରିତ୍ୟ ବର୍ତନ୍ତେ ଇତରେ ଶ୍ରମାଃ ॥ (ମହାଭାରତ)
ପୂର୍ବଜ ଦେବତା, ଅତିଥି ବନ୍ଧୁ ପାଇଁ ଧର୍ମାନୁକୁଳ ନିରନ୍ତର କର୍ମ କରିବା ଗୃହସ୍ଥର ପ୍ରଧାନ କର୍ତ୍ତବ୍ୟ। (ତିରୁବଲ୍ଲୁବର)
ଦେବତାତିଥି ମୃତ୍ୟାନଂ ପିତୃଣାଂ ପ୍ରତିପୂଜନାତ୍ । (ମହାଭାରତ)

୨. ନିଜଠାରୁ ଅଧିକ ସନ୍ତାନ ବୁଦ୍ଧିମାନ ହେଲେ ବିଶାଳ ଭୂତଳରେ ସମସ୍ତ ମନୁଷ୍ୟଙ୍କୁ ଆନନ୍ଦ ପ୍ରଦାନ କରେ। (ତିରୁବଲ୍ଲୁବର)
ଏକମେବ ସି ଲୋକେ ଅସ୍ମିନ୍ନାମ୍ନୋ ଗୁଣବତରମ୍ ।
ଇଚ୍ଛନ୍ତି ପୁରୁଷାଃ ପୁତ୍ରଂ ଲୋକେ ନାନ୍ୟଂ କଞ୍ଚନ (ମହାଭାରତ)

୩. ପ୍ରସନ୍ନ ଚିତ୍ତରେ ଶ୍ରେଷ୍ଠ ଅତିଥିଙ୍କୁ ଗୃହରେ ସତ୍କାର କଲେ, ସେଠାରେ ଲକ୍ଷ୍ମୀ ନିବାସ କରନ୍ତି। (ବଲ୍ଲୁବର)
ସୁମୁଖ ସୁପ୍ରନାତ୍ମା ଧୀମାନତିଥିମାଗତମ୍ ।
ସ୍ୱାଗତେନାସନେନାଦଧିଭିରନ୍ନାଦୀନ୍ନ ଚ ପୂଜୟେତ୍ ॥ (ମହାଭାରତ)

୪. ମରଣ ସଦୃଶ ଅତି ବିଷମ ଅପକାର କରିଲା ପରେ ମଧ୍ୟ ଅପକାରୀର ପୂର୍ବକୃତ ଗୋଟିଏ ଉପକାରର ସ୍ମରଣ ସେହି ଅପକାରକୁ

ଭୂଲାଇ ଦେଇଥାଏ । (ବଲ୍ଲୁବର)
ପୂର୍ବୋପକାରୀ ଯସ୍ତେ ସ୍ୟାଦପରାଧେ ଗରୀୟସି ।
ଉପକାରେଣ ତତ୍ ତସ୍ୟ କ୍ଷନ୍ତବ୍ୟମପରାୟିନଃ ॥ (ମହାଭାରତ)

୫. ମାଂସ ଗ୍ରହଣ ପାଇଁ ଲୋକେ ଜୀବହତ୍ୟା ନ କରିଲେ ମାଂସ ବିକ୍ରୟ କରିବାବାଲା କେହି ଆଉ ରହିବେ ନାହିଁ । (ବଲ୍ଲୁବର)
ଯଦିଚେତ୍ ଖାଦକୋ ନ ସ୍ୟାନ୍ନ ଦୋ ଘାତକୋ ଭବେତ୍ ।
ପାତକଃ ଖାଦକାର୍ଥାୟ ତଦୁପାତୟତି ବୈ ନରଃ ॥ (ମହାଭାରତ)

୬. ଘୋର ତପସ୍ୟାରେ ଲୀନ ବ୍ୟକ୍ତି ଯମକୁ ଅନାୟସରେ ବିଜୟଲାଭ କରିଥାଏ (ତିରୁବଲ୍ଲୁବର)
ସଞ୍ଚରନ୍ତି ତପୋ ଘୋରଂ ବ୍ୟାଧି ମୃତ୍ୟୁ ବିବର୍ଜିତାଃ ।
ସ୍ୱବଶାଦେବ ତେ ମୃତ୍ୟୁଂ ଭୀଷୟନ୍ତି ଚ ନିତ୍ୟଶଃ ॥ (ମହାଭାରତ)

୭. କୌଣସି ପ୍ରକାର କ୍ଷତି ରହିତ କଥନକୁ ସତ୍ୟ କୁହାଯାଏ । (ବଲ୍ଲୁବର)
ସତସ୍ୟ ବଚନଂ ଶ୍ରେୟଃ ସତ୍ୟାଦପି ହିତଂ ଭବେତ୍ ।
ଯଦ୍‌ଭୂତ ହିତ ମତ୍ୟନ୍ତ ମେତତ୍ ସତ୍ୟଂ ମତଂ ମମ ॥ (ମହାଭାରଚ)

୮. କାହା ଉପରେ କ୍ରୋଧ ଉତ୍ପନ୍ନ ହେଲେ ତାହା ଭୂଲିଯିବା ଉଚିତ୍, ନଚେତ୍ ଏହାର ପରିଣାମ କ୍ରମଶଃ ଭୟଙ୍କର ହୁଏ । (ବଲ୍ଲୁବର)
କ୍ରୋଧମୂଳୋ ବିନାଶୋ ହି ପ୍ରଜାନାମିସ ଦୃଶ୍ୟତେ ।
ତତ୍‌କଥଂ ମାଦୃଶଃ କ୍ରୋଧ ମୃସ୍ତଜେଲ୍ଲୋକନାଶନମ୍ ॥ (ମହାଭାରତ)

୯. ନିଜକୁ ରକ୍ଷା କରିବାକୁ ହେଲେ କ୍ରୋଧରୁ ନିଜକୁ ରକ୍ଷା କରିବା ଉଚିତ୍, କ୍ରୋଧ ହିଁ ତାକୁ ମାରିଦେବ ॥ (ବଲ୍ଲୁବର)
କ୍ରୋଧ ହନ୍ତା ମନୁଷ୍ୟାଣାଂ କ୍ରୋଧ ଭାବୟିତା ପୁନଃ ।
ଇତି ବିଦ୍ଧି ମହାପ୍ରାଜ୍ଞୋ କ୍ରୋଧମୂଳୋ ଭବାଭବୋ ॥ (ମହାଭାରତ)
ୟଃ ପୁନଃ ପୁରୁଷଃ କ୍ରୋଧଂ ନିତ୍ୟଂ ନ ସହତେ ଶୁଭେ । (ମହାଭାରତ)
ସନ୍ନ୍ୟାସ ସମ୍ପର୍କରେ କହିଛନ୍ତି - ଯେଉଁ ଯେଉଁ ବସ୍ତୁରୁ ମାନବ ବନ୍ଧନମୁକ୍ତ ହୋଇଯାଏ, ସେହି ବସ୍ତୁ ମାନଙ୍କ ଯୋଗୁଁ ଦୁଃଖ ପ୍ରାପ୍ତ ହୁଏ ନାହିଁ । (ବଲ୍ଲୁବର)

ଯଥା ଯଥା ଚ ପର୍ଯେତିଂ ଲୋକ ତନ୍ତ୍ର ମସାରବତ୍ ।
ତଥା ତଥା ବିରାଗୋ ଅତ୍ର ଜାୟତେ ନାତ୍ର ସଂଶୟଃ ॥ (ମହାଭାରତ)
ଯତୋ ଯତୋ ନିବର୍ତନ୍ତେ ତତସ୍ତତୋ ବିମୁଚ୍ୟତେ ।
ନିବର୍ତ୍ତନାଦ୍ଧି ସର୍ବତୋ ନ ବୈତି ଦୁଃଖମଣ୍ୱାପି ॥ (ମହାଭାରତ)

୧୦. କୁରଳର ମତ ହେଉଛି -
ବନ୍ଧନମୁକ୍ତ ହେଲାପରେ ଭବରୁ ମୁକ୍ତିପ୍ରାପ୍ତ ହେବ, ଅନ୍ୟଥା ଜନ୍ମମୃତ୍ୟୁର-
ଅସ୍ଥିରତାରେ ଘୁରିବୁଲିବାକୁ ହେବ । (ତିରୁକୁରଳ)
ପ୍ରବୃତ୍ତଂ କର୍ମ ସଂସେବ୍ୟ ଦେବାନାମେତିସାମ୍ୟତାମ୍ ।
ନିବୃତ୍ତଂ ସେବମାନସ୍ତୁ ଭୂତାମତ୍ୟେତି ପଞ୍ଚ ॥ (ମହାଭାରତ)

୧୧. କବି ପ୍ରଶ୍ନ କରନ୍ତି - ଭାଗ୍ୟରୁ ବଳି ଶକ୍ତି କାହାର ଅଛି ? (ବଲ୍ଲୁବର)
ଦୈବ ତୁ ବଳବତ୍ତରମ୍ । (ମହାଭାରତ)

୧୨. ମୁଁ ଓ ମୋର ଭଳି ଅହଙ୍କାରକୁ ଯିଏ ଦମନ କରିଥାଏ, ସେ ଦେବତାଙ୍କଠାରୁ
ଶ୍ରେଷ୍ଠ ପ୍ରାପ୍ତ ହୁଏ । (ତିରୁବଲ୍ଲୁବର)
ଧ୍ୟାନଯୋଗେନ ଶୁଦ୍ଧେନ ନିର୍ମମା ନିରଂକୃତାଃ ।
ଆପ୍ନୁବନ୍ତି ମହାତ୍ମାନୋ ମହନ୍ତଂ ଲୋକମୁତ୍ତମମ୍ ॥
ଏବଂ ନିର୍ମମୋ ନିରହଙ୍କାରୋ ମୁଚ୍ୟୁତେ ନାତ୍ର ସଂଶୟ ॥ (ମହାଭାରତ)

୧୩. ପରିଶ୍ରମ ଯୋଗୁଁ ଧନ ପ୍ରାପ୍ତି ହୋଇ ସୌଭାଗ୍ୟ ପ୍ରକଟ ହୁଏ ଏବଂ ଆଳସ୍ୟ
ହେତୁ ଧନ ଉଭାନ ହୋଇ ଦୁର୍ଭାଗ୍ୟ ଘୋଟି ଆସେ (ତିରୁବଲ୍ଲୁବର)
ଦେବେନ କିଳି ଯସ୍ୟାର୍ଥଃ ପୁନିତୋରୂପି ବିପଦ୍ୟତେ ।
ସଦା ବୈଦାଗମେ କ୍ଷତ୍ରଃ କାର୍ଯ୍ୟୋ ବିଜାନତା ॥ (ମହାଭାରତ)

୧୪. ଧନ ଅଭାବରୁ ଦୁର୍ଭାଗା ମଣିଷର ମନ୍ଦବୁଦ୍ଧି ଉତ୍ପନ୍ନ ହୁଏ, ଏବଂ ଧନ ପ୍ରାପ୍ତିପରେ
ତାର ବିଶାଳ ବୁଦ୍ଧିରେ ସୌଭାଗ୍ୟଶାଳୀ ହୁଏ । (ତିରୁବଲ୍ଲୁବର)
ବଳଂ ବୁଦ୍ଧିଶ୍ଚ ତେଜଶ୍ଚ ପ୍ରତିପତ୍ତିଶ୍ଚ ଭାରତ ।
ଭବନ୍ତି ଭବକାଳେଷୁ ବିପଦ୍ୟନ୍ତେ ବିପର୍ଯ୍ୟୟେ ॥ (ମହାଭାରତ)

୧୫. ଭାଗ୍ୟର ଫଳସ୍ୱରୂପ ସଂସାରର ସ୍ୱଭାବ ଦୁଇପ୍ରକାର ହୋଇଯାଏ । ପ୍ରଥମ ସମ୍ପତ୍ତି ସମ୍ପନ୍ନତା ଓ ଦ୍ୱିତୀୟରେ ସଦ୍‌ଜ୍ଞାନ- ସମ୍ପନ୍ନତା (ତିରୁବଲ୍ଲୁବର)
ନ ବିଘିମ୍ ଗ୍ରସତେ ପ୍ରଜ୍ଞା ପ୍ରଜ୍ଞାମ୍ ତୁ ଗ୍ରସତେ ବିଧିଃ ।
ବିଧି ପର୍ଯ୍ୟଗତାନାର୍ଥାନ୍ ପ୍ରଜ୍ଞାବାନ୍ ପ୍ରତିପଦ୍ୟତେ ॥ (ମହାଭାରତ)

୧୬. ଧର୍ମଜ୍ଞ ସିଏ ଯେ ନିଜଠାରୁ ବଡ ଜ୍ଞାନୀ ପୁରୁଷଙ୍କ ସହ ତାଙ୍କର ମିତ୍ରତା, ତାଙ୍କ ସହାୟତାକୁ ବୁଝି ତଦନୁସାର କାର୍ଯ୍ୟ କରେ । (ବଲ୍ଲୁବର)
ଗୁଣୋବନ୍ତୋ ମହୋତ୍ସାହା ଧର୍ମାଜ୍ଞାଃ ସାଧବଶ୍ଚ ଯେ ।
ସଂଦଧୀତ ନୃପସ୍ତୈଶ୍ଚ ରାଷ୍ଟ୍ର ଧର୍ମେଣ ପାଳୟନ୍ ॥ (ମହାଭାରତ)

୧୭. ଇଚ୍ଛିତ କର୍ମ ଶକ୍ତି, ନିଜ ଶକ୍ତି, ଶତ୍ରୁର ଶକ୍ତି ଏବଂ ଉଭୟର ଶକ୍ତି ସହାୟତାକୁ ତଉଲ କରି ଉକ୍ତ କର୍ମରେ ପ୍ରବୃତ୍ତ ହେବା ବିଧେୟ ।(ତିରୁକୁରଳ)
ସାରା ସାରଂ ବଳଂ ବୀର୍ଯ୍ୟମାତ୍ମନୋ ଦ୍ୱିଷତଶ୍ଚ ୟଃ ।
ଜାନନ୍ୱିଚରତି ପ୍ରାଜ୍ଞୋ ନସ ଯାତି ପରାଭବମ୍ ॥ (ମହାଭାରତ)

୧୮. ସୈନ୍ୟ, ପ୍ରଜା, ଧନ, ଅମାତ୍ୟ, ମିତ୍ର, ଦୁର୍ଗ-
ଏ ଛଅ ନିକଟରେ ରାଜା ପୁରୁଷ ସିଂହପରି ବ୍ୟବହାର କରେ । (ତିରୁକୁରଳ)
ଆତ୍ମାମାତ୍ୟଶ୍ଚ କୋଷଶ୍ଚ ଦଣ୍ଡୋ ମିତ୍ରାଣି ଚୈବ ହି
ତଥା ଜନପଦ ଚୈବ ପୁରଂ ଚ କୁରୁ ନନ୍ଦନ
ଏତତ୍ସପ୍ତାତ୍ମକଂ ରାଜ୍ୟ ପରିଖାଳୟ ପ୍ରୟତ୍ନତଃ । (ମହାଭାରତ)

୧୯. ଗଭୀର ଜଳ ଭିତରେ ମଗର ସମସ୍ତଙ୍କୁ ଜୟ କରିବା ପାଇଁ ସମର୍ଥ କିନ୍ତୁ ଜଳର ବାହାରକୁ ଆସିଲେ ସେ ପରାଜୟ ସ୍ୱୀକାର କରିବ (ତିରୁକୁରଳ) ।
ନକ୍ର ସ୍ୱସ୍ଥାନମାସାଦ୍ୟ ଗଜେନ୍ଦ୍ରମପି କର୍ଷତି ।
ସ ଏବ ପ୍ରଚ୍ୟୁତଃ ସ୍ଥାନାନ୍ମୁନାପି ପରିଭୂୟତେ ॥ (ମହାଭାରତ)

୨୦. ରାଜା ତାହାଙ୍କୁ କୁହାଯାଏ, ଯିଏ ଶାସନ ନୀତିରୁ ବିଚ୍ୟୁତି ହୁଅନ୍ତି ନାହିଁ, ଅଧର୍ମକୁ ଦୂରକରି ବୀରତ୍ୱକୁ ସମ୍ମାନ ସହ ରକ୍ଷା କରନ୍ତି । (ତିରୁବଲ୍ଲୁବର)
ଅପ୍ରମାଦେନ ଶିକ୍ଷେୟାଃ କ୍ଷମାଂ ଧୃତିଂ ମତିମ୍ ।
ଭୂତାନାଂ ସତ୍ୟଜିଜ୍ଞାସାଂ ସାଧ୍ୟ ସାଧୁଚ ସର୍ବଦା ॥ (ମହାଭାରତ)

୨୧. ଅଭିମାନ, କ୍ରୋଧ ଓ ବିଷୟବାସନା ଦୋଷ ରହିତ ବ୍ୟକ୍ତି ଅଧିକାଧିକ ବୈଭବ ସମ୍ପନ୍ନ ହୋଇଥାଏ । (ତିରୁକୁରଲ)
ଏତେଭ୍ୟୋ ନିତ୍ୟଯତଃ ସ୍ୟାନ୍ନକ୍ତଂଚର୍ଯ୍ୟା ଚ ବର୍ଜୟେତ୍ ।
ଅତ୍ୟାୟଃ ଚାତୀମାନଂ ଚ ଦମ୍ଭଂ, କ୍ରୋଧଂ ଚ ବର୍ଜୟେତ୍ ॥ (ମହାଭାରତ)

୨୨. ଯିଏ ନିଜକୁ ରକ୍ଷା କରିବାକୁ ଇଚ୍ଛାକରେ, ସେ ନିଜକୁ ଆପଣା କ୍ରୋଧରୁ ରକ୍ଷା କରୁ, ଅନ୍ୟଥା କ୍ରୋଧ ତାକୁ ନଷ୍ଟ କରିଦେବ । (ତିରୁବଲ୍ଲୁବର)
ଯୋ ହି ସଂହରତେ କ୍ରୋଧଂ ଭାବସ୍ତସ୍ୟ ସୁଶୋଭତେ ।
ଯୋ ନ ସଂହରତେ କ୍ରୋଧଂ ତସ୍ୟା ଭାବ ଭବତ୍ୟୁତ ॥ (ମହାଭାରତ)

୨୩. ମନରେ କ୍ରୋଧକୁ ସ୍ଥାନ ନ ଦେଲେ ସମସ୍ତ ଇଚ୍ଛିତ ବସ୍ତୁ ତୁରନ୍ତ ପ୍ରାପ୍ତ ହୁଏ । (ତିରୁବଲ୍ଲୁବର)
ୟଃ ସମୁତ୍ପତିତଂ କ୍ରୋଧ ମକ୍ରୋଧେନ ନିରସ୍ୟତି ।
ଦେବଯାନି ବିଜାନୀହି ତେନ ସର୍ବମିଦଂ ଜିତମ୍ ॥ (ମହାଭାରତ)

୨୪. ଧର୍ମରେ ସର୍ବପ୍ରଥମ ହେଉଛି ଅହିଂସା । ଏହାପରେ ଅସତ୍ୟର ସ୍ଥାନ । (ତିରୁବଲ୍ଲୁବର)
ଅହିଂସା ସର୍ବଭୂତାନା ମେତତ୍ କୃତ୍ୟତମଂ ମତମ୍ ।
ତଥା ଅନୃତଂ ତୁ ଭବେଦ୍ୱାଖମ୍ ନ ତୁ ହିଂସା କଦାଚନ ॥
ତଥା ସତ୍ୟଂ ଧର୍ମଂ ଇତିଲ୍ଲୋକେ ବଦନ୍ତି ବହବୋ ଜନା ॥
ୟତ ସ୍ୟାଜହିଂସାସ୍ୟୁକ୍ତଂ ସ ଧର୍ମ ଇତି ନିଶ୍ଚୟଃ ॥ (ମହାଭାରତ)

ତିରୁକୁରଲ ଏବଂ ମହାଭାରତରେ ଭାରତୀୟ ଜୀବନ ଓ ସଂସ୍କୃତିର ସଫଳ ଅଭିବ୍ୟକ୍ତି ହୋଇଅଛି । ଉପରୋକ୍ତ ପ୍ରକରଣରେ ସାଂସ୍କୃତିକ ଐକ୍ୟର ସଙ୍କେତ ମାତ୍ର ଦେବାର ଲଘୁ ପ୍ରୟାସ କରାଯାଇଛି ।

## ତିରୁକୁରଲ ଓ ମନୁସ୍ମୃତି :

ତିରୁକୁରଲ ଓ ମନୁସ୍ମୃତି ଗ୍ରନ୍ଥଦ୍ୱୟରେ କର୍ମ ଫଳର ସିଦ୍ଧାନ୍ତ ଉପରେ ଆସ୍ଥା ପ୍ରକଟ ହୋଇଛି । ଧର୍ମ ମାର୍ଗରେ ଅଗ୍ରସର ହେଲେ ମନୁଷ୍ୟକୁ ଜନ୍ମ ଚକ୍ରରୁ ମୁକ୍ତି

ମିଳିପାରିବ । କର୍ମ ଫଳର ସିଦ୍ଧାନ୍ତ ସମସ୍ତ ଭାରତୀୟ ବାଙ୍ମୟରେ ଅନେକ ଭାବରେ ସମାହିତ ହୋଇଛି । ତିରୁକୁରଳ ଦର୍ଶାଉଛି ଯେ ଧର୍ମ ଯଶପ୍ରଦ ଓ ଧନପ୍ରଦ, ତେଣୁ ଧର୍ମଠୁଁ ବଳି ଶ୍ରେଷ୍ଠ ସଂସାରରେ ଆଉ କେଉଁ ପଦାର୍ଥ ଅଛି ? କୁରଳରେ ଚୀଷ (ଶ୍ରେୟସ୍) ଏବଂ ଚେଳବମ୍ (ପ୍ରେୟସ୍) ଭାବେ ଦର୍ଶାଯାଇଅଛି ସୁଖାମ୍ଯୁୟିଙ୍କ ଚୈବ ନୈଃ ଶ୍ରେୟସିକ ମେବଚ । (ମନୁସ୍ମୃତି)

ତିରୁକୁରଳ - ବସ୍ତୁତଃ ଗାର୍ହସ୍ଥ୍ୟ ଜୀବନ ଧର୍ମର ପୂର୍ଣ୍ଣରୂପ ଅଟେ । ଏହା ଦୋଷମୁକ୍ତ ହେଲେ ଯାଠାରୁ ବଳି ଅଧିକ କଣ ଅଛି ?

ମନୁସ୍ମୃତି - ଯସ୍ମାତ୍ତ୍ରୟୋ ଅପ୍ୟାଶ୍ରମିଣୋ ଜ୍ଞାନେନାନ୍ନେନ ଚାନ୍ୱହମ୍ ।
ଗୃହସ୍ଥେ ନୈବ ଧାର୍ଯ୍ୟନ୍ତେ ତସ୍ମାଜ୍ୟେଷ୍ଠାଶ୍ରମୋ ଗୃହୀ ॥

ତିରୁକୁରଳ - ଗୃହସ୍ଥ ଅନ୍ୟ ତିନି ଆଶ୍ରମରେ ଧର୍ମାନୁକୂଳ ଜୀବନ ବ୍ୟତୀତ କରିବାବାଲାଙ୍କ ନିମିତ୍ତ ସହାୟକ ହୋଇଥାଏ ।

ମନୁସ୍ମୃତି - ଯଥା ବାୟୁଂ ସମାଶ୍ରିତ୍ୟ ବର୍ତନ୍ତେ ସର୍ବଜନ୍ତବଃ ।
ତଥା ଗୃହସ୍ଥମାଶ୍ରିତ୍ୟ ବର୍ତ୍ତନ୍ତେ ସର୍ବ ଆଶ୍ରମଃ ॥

ତିରୁକୁରଳ - 'ବାଙ୍କ କ୍କୈତ୍ତୁଣୈନଲମ୍' - ଜୀବନ ସଙ୍ଗିନୀ ଗୁଣର ମର୍ଯ୍ୟାଦା ଗୃହ ମଧ୍ୟରେ ସ୍ତ୍ରୀର ମର୍ଯ୍ୟାଦା ରକ୍ଷା କରିବା ବ୍ୟର୍ଥ କିନ୍ତୁ ତାର ବାସ୍ତବିକ ମର୍ଯ୍ୟାଦା ହି ତାର ସତୀତ୍ୱ ।

ମନୁସ୍ମୃତି - ଅରକ୍ଷୀତ ଗୃହେ ରୁଦ୍ଧାଃ ପୁରୁଷୈରାପ୍ତକାରିଭିଃ ।
ଆତ୍ମାନ୍ ମାତ୍ମନା ଯାସ୍ତ ରକ୍ଷେୟୁସ୍ତାଃ ସୁରକ୍ଷିତାଃ ॥

ତିରୁକୁରଳ - 'ପୟନିଲ ଚୋଲ୍ଲାମୈ' - ପ୍ରଳାପ କରିବା ।

ବ୍ୟର୍ଥ ପ୍ରଳାପ କରି ଅନ୍ୟକୁ ଅପ୍ରସନ୍ନ କରିବା ମନୁଷ୍ୟ ସମସ୍ତଙ୍କ ଦ୍ୱାରା ଅସମ୍ମାନିତ ହୁଏ ।

ମନୁସ୍ମୃତି - କଟୁଭାଷଣ, ଅସତ୍ୟଭାଷଣ, ପରୋକ୍ଷରେ ଅନ୍ୟର ଦୋଷ କହିବା ଓ ନିଷ୍ପ୍ରୟୋଜନ କଥନ କରିବା ସମସ୍ତଙ୍କ ପାଇଁ ଅଶୁଭ ବିବେଚିତ ହୁଏ ।

ତିରୁକୁରଳ - 'ପୁଲାଲ୍ ମରୁତ୍ତଲ୍' - ମାଂସାହାର ନିଷେଧ ନିଜ ଶରୀରର ମାଂସ ବୃଦ୍ଧି ପାଇଁ ଅନ୍ୟ ପ୍ରାଣୀର ଶରୀର ଭକ୍ଷଣ ବ୍ୟକ୍ତି କିପରି ଦୟାବାନ୍ ହୋଇପାରିବ ?

ମନୁସ୍ମୃତି - ସ୍ୱ ମାଂସ ପରମାଂସେନ ଯୋ ବର୍ଦ୍ଧୟୁତି ମିଛତି ।
ଅନଭ୍ୟର୍ଚ୍ଚର୍ଯ୍ୟ ପିତୃଦେବାଂସ୍ତତୋ ଅନ୍ୟୋନାସ୍ତ୍ୟ ପୁଣ୍ୟକୃତ୍ ।।

ତିରୁକୁରଳ - ମନୁଷ୍ୟର ସଶରୀର ଜୀବିତ ରହିବା ନିମିତ୍ତ ମାଂସାହାର ତତ୍ତ୍ୱ ଆଦୃତ ହୋଇଛି ।

ମନୁସ୍ମୃତି - ସମୁତ୍ପତ୍ତିଂ ଚ ମାଂସସ୍ୟ ବଧବନ୍ଧୌ ଚ ଦେହିନାମ୍ ।
ପ୍ରମମୀକ୍ଷ ନିବର୍ତ୍ତେତ ସର୍ବ ମାଂସସ୍ୟ ଭକ୍ଷରାତ୍ ।।

ତିରୁକୁରଳ - ନିର୍ଦ୍ଦୋଷ ବୁଦ୍ଧି ସମ୍ପନ୍ନ ଏକ ଜୀବର ଶରୀର ମାଂସ ଜୀବ ବଧର ଏକ ଭୟଙ୍କର ରୂପ ।।

ମନୁସ୍ମୃତି - ନାକୃତ୍ୟା ପ୍ରାଣୀନାଂ ହିଂସାଂ ମାଂସମୁତ୍ପଦ୍ୟେତେ କ୍ୱଚିତ୍ ।
ନଚ ପ୍ରାଣିବଦ୍ଧଃ ସ୍ୱର୍ଗ୍ୟସ୍ତସ୍ମାନ୍ ମାଂସ ବିବର୍ଜୟେତ୍ ।।

ତିରୁକୁରଳ - ଜୀବ ହତ୍ୟା ଓ ମାଂସ ଭକ୍ଷଣ ନ କରିବା ଘୃତାହୁତି ହଜାରଠାରୁ ଶ୍ରେଷ୍ଠ ଅଟେ ।

ମନୁସ୍ମୃତି - ବର୍ଷେ ବର୍ଷେ ଅଶ୍ୱ ମେଦେଢ଼ ଯୋ ଯଜେତ ଶତଂ ସମାଃ ।
ମାଂସାନି ଚ ନ ଖାଦେଦ୍ୟସ୍ତୟୋଃ ପୂଣ୍ୟଫଳଂ ସମମ୍ ।।

ତିରୁକୁରଳ - ଯିଏ ଅହିଂସ୍ରକ ସେ ମାଂସ ଖାଏ ନାହିଁ, ତାଙ୍କୁ ସମସ୍ତ ଜୀବ କରବଦ୍ଧ ହୋଇ ପ୍ରଣାମ କରନ୍ତି । ସେ ବିଶେଷ ଲୋକପ୍ରିୟ ହୋଇଥାନ୍ତି ।

ମନୁସ୍ମୃତି - ନ ଭକ୍ଷୟତି ଯୋ ମାସଂ ବିଧି ହିତ୍ୱା ପିଶାଚବତ୍ ।
ସ ଲୋକେ ପ୍ରିୟତାମ୍ ଯାତି ବ୍ୟଧିଭିଶ୍ଚ ନ ପୀଡ଼୍ୟତେ ।।

ତିରୁକୁରଳ - ଯେଉଁ ପ୍ରକାରରେ ସ୍ୱର୍ଣ୍ଣ ଦହନ ହୋଇ ନିର୍ମଳ ଓ ପ୍ରକାଶମାନ ହୁଏ, ଏହି ପ୍ରକାରେ ତପସ୍ୱୀ କଷ୍ଟରେ ନିଜକୁ ବିତାଇ ନିର୍ମଳ ଓ ଶୁଦ୍ଧ ହୋଇ ଜ୍ଞାନଯୁକ୍ତ ହୁଏ ।

ମନୁସ୍ମୃତି - ଦହ୍ୟନ୍ତେ ଧ୍ମାୟମାନାନାଂ ଧାତୁନାଂ ହି ଯଥାମଳାଃ ।
ତଯେନ୍ଦ୍ରିୟାଣାଂ ଦହ୍ୟତେ ଦୋଷାଃ ପ୍ରାଣସ୍ୟ ନିଗ୍ରହାତ୍ ॥

ତିରୁକୁରଳ - ସନ୍ନ୍ୟାସର ମହତ୍ତ୍ୱ ପ୍ରତିପାଦନ କରିବା ପାଇଁ କୁହାଯାଇଛି ଯେ, ବଂଧନମୁକ୍ତ ହେଲେ ହିଁ ସଂସାରରୁ ମୁକ୍ତି ମିଳିବ ନଚେତ୍ ଜୀବନରେ ଅସ୍ଥିରତା ଲାଗି ରହିବ । ବନ୍ଧନଯୁକ୍ତ ବ୍ୟକ୍ତି ବିବିଧ ଦୁଃଖରେ ବାନ୍ଧି ହୋଇ କେବେହେଁ ମୁକ୍ତ ହୋଇପାରେ ନାହିଁ ।

ମନୁସ୍ମୃତି - କର୍ମରୁ ନିବୃତ୍ତ ହେଲେ ଅର୍ଥାତ୍ କର୍ମରେ ଅନାସକ୍ତ ହେଲେ ପଞ୍ଚଭୂତକୁ ଅତିକ୍ରମଣ କରି ମନୁଷ୍ୟ ମୋକ୍ଷପ୍ରାପ୍ତ ହୁଏ ଅର୍ଥାତ୍ ଜନ୍ମ ମୃତ୍ୟୁରୁ ମୁକ୍ତ ହୋଇଯାଏ ।

ତିରୁକୁରଳ - ରାଜା ପ୍ରକୃତରେ ସିଏ, ଯିଏ ସପ୍ରଯତ୍ନ ଉପାର୍ଜନ କରେ ଏବଂ ସେ ଧନର ରକ୍ଷା ବୃଦ୍ଧି ଓ ବିତରଣ କରେ ।

ମନୁସ୍ମୃତି - ଅଲବ୍ଧଂ ଚୈବଲିପ୍ସେତ ଲବ୍ଧଂ ରକ୍ଷେତ୍ ପ୍ରଯତ୍ନତଃ ।
ରକ୍ଷିତଂ ବର୍ଦ୍ଧୟେଚୈବ ବୃଦ୍ଧିଂ ପାତ୍ରେଷୁ ନିଃକ୍ଷିପେତ୍ ॥

ଅପ୍ରାପ୍ତକୁ ଲାଭ କରିବା ପାଇଁ ଇଛା କଲେ, ପ୍ରାପ୍ତକୁ ଯତ୍ନ ପୂର୍ବକ ରକ୍ଷା କରେ ଓ ତାର ବୃଦ୍ଧି କରାଏ, ବୃଦ୍ଧି ଧନରାଶିକୁ ସତ୍ ପାତ୍ରରେ ଦାନ ଯିଏ କରେ, ସେ ପ୍ରକୃତ ରାଜା ।

ତିରୁକୁରଳ - ଶିକ୍ଷା ପ୍ରସଙ୍ଗରେ ତିରୁବଲ୍ଲୁବର କହନ୍ତି - ପୃଥିବୀର ମାଟିକୁ ଯେତେ ଗଭୀର ଖୋଳିବ, ସେଥିରୁ ସେହି ପରିମାଣରେ ଅଧିକ ଜଳ ବାହାରିବ, ସେହିପରି ଜଣେ ମଣିଷ ଯେତେ ଅଧିକ ଶିକ୍ଷାଲାଭ କରିବ ତାର ବୁଦ୍ଧି ସେତେ ତୀବ୍ର ହେବ ।

ମନୁସ୍ମୃତି - ଯଥା ଖନନ ଖନିତ୍ରେଣ ନରୋବାର୍ଯ୍ୟଧି ଗଛତି
ତଥା ପୁରଷତାଂବିଦ୍ୟାଂ ଶୁଶ୍ରୁଷୁରଧିଗଛତି ।

ଖନନ ଯେତେ ଅଧିକ କଲେ ଯେପରି ଅଧିକ ଜଳ ମିଳେ ସେପରି ଅଧିକ ଗୁରୁ ସେବା କଲେ ଗୁରୁ ଦତ୍ତ ବିଦ୍ୟା ପ୍ରାପ୍ତି ହୁଏ ।

ତିରୁକୁରଳ - ରାଜା ଅଥବା ଶାସକଙ୍କ ସମ୍ପର୍କରେ ତିରୁବଲ୍ଲୁବର କହନ୍ତି ଯେ ଶାସକ ଅଳ୍ପ ବୟସ୍କ କିମ୍ବା ବନ୍ଧୁ ହେଲେ ମଧ୍ୟ ତାଙ୍କୁ ଅପମାନଜନକ ମନ୍ତବ୍ୟ ନ କରି ଅନୁକୂଳ ଓ ମର୍ଯ୍ୟାଦିତ ବ୍ୟବହାର ପ୍ରଦର୍ଶନ କରିବା ବିଧେୟ । ପୁନଶ୍ଚ ସେ କହନ୍ତି ଯେ ଅନ୍ୟାୟପୂର୍ଣ୍ଣ ଏବଂ ବିଚାରହୀନ ଶାସକ ପ୍ରଜାମାନଙ୍କ ଦ୍ୱାରା ଆପେ ଆପେ ବଞ୍ଚିତ ହୁଏ ।

ମନୁସ୍ମୃତି - ମୋହାଦ୍ରାଜା ସ୍ୱରାଷ୍ଟ୍ରଂ ବଃ କର୍ଷୟତି ନୟବେକ୍ଷୟା
ସୋ ଅଚିରାଷ୍ଟ ଭସ୍ୟତେ ରାଜ୍ଜାଜ୍ଜୀ ବିତୀତ ସବାନ୍ଧବଃ ॥

ତିରୁକୁରଳ - ରାଜା ପରାମର୍ଶ ଶୁଣି ଯଦି ଦଣ୍ଡର ଅସୀମ ଭୟ ନ ଦେଖାଇ ମୃଦୁ ବ୍ୟବହାର ପ୍ରଦର୍ଶନ କରନ୍ତି, ତେବେ ରାଜ୍ୟର ସ୍ଥାୟୀ ସମୃଦ୍ଧି ଘଟିବ ।

ମନୁସ୍ମୃତି - ତୀକ୍ଷ୍ଣଶ୍ଚୈବ ମୃଦୁଶ୍ଚ ସ୍ୟାତ୍ କାର୍ଯ୍ୟ ଦକ୍ଷ ମହିପତି ।
ତୀକ୍ଷ୍ଣଶ୍ଚୈବ ମୃଦ୍ୟୁଶୈବ ରାଜା ଭବତି ସଂମତ ॥

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ବଲ୍ଲବର ଏବଂ ମନୁଙ୍କ ମଧ୍ୟରେ ଅନେକ ସମାନ ଦୃଷ୍ଟିକୋଣ ପରିଲକ୍ଷିତ ହୁଏ । ଏହା ମୂଳରେ ଏକ ପରମ୍ପରା ଓ ସାଂସ୍କୃତିକ ଚେତନାର ପ୍ରଭାବ ଅଛି । ଏଥିରୁ ସ୍ୱୀକୃତ ହେଉଛି ଯେ ମନୁଙ୍କ ପ୍ରଭାବ ତିରୁବଲ୍ଲୁବରଙ୍କ ଉପରେ ନିଶ୍ଚିତ ପଡ଼ିଛି । ମନୁସ୍ମୃତି ଏବଂ ତିରୁକୁରଳ ଉଭୟ ଗ୍ରନ୍ଥ ସାହିତ୍ୟିକ ଓ ସାମାଜିକ ସୀମା ଅଧ୍ୟୟନର ଅର୍ନ୍ତଭୂକ୍ତ ।

## ତିରୁକୁରଳ ଏବଂ କୌଟିଲ୍ୟ ଅର୍ଥଶାସ୍ତ୍ର

ଅନେକ ବିଦ୍ୱାନ୍‌ଙ୍କ ମତ ଯେ ତିରୁବଲ୍ଲୁବର ତାଙ୍କ ରଚିତ ତିରୁକୁରଳଙ୍କର କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରର ଅନେକ ସାମଗ୍ରୀ ଉପଯୋଗ କରିଛନ୍ତି । ବିଶେଷତଃ ସମକାଳୀନ ତାମିଲ୍ ସାହିତ୍ୟରେ ରାଜ୍ୟ ଗଠନ ବିଷୟ ଅର୍ଥଶାସ୍ତ୍ର ସହିତ ମେଳ ଖାଉଛି । ଉତ୍ତର ଭାରତର ସାହିତ୍ୟର ପ୍ରଭାବ ଦକ୍ଷିଣ ଭାରତ ସାହିତ୍ୟରେ ପ୍ରଭାବ ବିସ୍ତାର କରିଛି । ଏଠାରେ ଉଭୟ ଗ୍ରନ୍ଥର ସମାନ ଅଭିବ୍ୟକ୍ତି ଉଲ୍ଲେଖ କରିବା ସମୀଚିନ ହେବ ।

କୁରଳ - ଏହି ଗ୍ରନ୍ଥରେ ଶକ୍ତି, ସମୟ ଓ ସ୍ଥଳ ଏହି ତିନୋଟିକୁ ସମାନ ମହତ୍ତ୍ୱ ପ୍ରଦାନ କରାଯାଇଛି ।

ଅର୍ଥଶାସ୍ତ୍ର - ‘‘ପରସ୍ପର ସାଥକା ହି ଶକ୍ତି ଦେଶ କାଳାଃ’’

କୁରଳ - ଦିବସରେ ପେଚା ଉପରେ ଦୁର୍ବଳ କାକ ମଧ୍ୟ ବିଜୟ ହାସଲ କରେ । ବିଜୟ ଲାଭ କରିବା ନିମିତ୍ତ ସମ୍ରାଟ୍ ତଦନୁକୁଳ ଅବସରର ଆବଶ୍ୟକତା ଅଛି ।

ଅର୍ଥଶାସ୍ତ୍ର - କାଳଃ ଶ୍ରେୟାନିତ୍ୟେକେ ଦିବା କାକଃ କୌଶିଙ୍କ
ହନ୍ତି, ରାତ୍ରୌ କୌଶିକଃ କାକମ୍ ଇତି ।।

କୌଟିଲ୍ୟ ସ୍ପଷ୍ଟ କରି କହିଛନ୍ତି ଯେ ଶକ୍ତି, ଦେଶ, କାଳ ଏକ ଅନ୍ୟର ପରିପୂରକ ।

କୁରଳ - ଶିକ୍ଷା ସମ୍ପର୍କରେ ତିରୁବଲ୍ଲୁବର କହନ୍ତି ଯେ ଆବଶ୍ୟକ ବିଷୟର ନିର୍ଦୋଷପୂର୍ଣ୍ଣ ଅଧ୍ୟୟନ କରିବା ଉଚିତ୍ ତଦନନ୍ତର ଏହା ଅନୁସାର ବ୍ୟବହାର କରିବା ପାଇଁ ସ୍ଥିର କରାଯିବା ଉଚିତ୍ ।

ଅର୍ଥଶାସ୍ତ୍ର - ବିଦ୍ୟାନାଂ ତୁ ଯଥାସ୍ୱମାଚାର୍ଯ୍ୟ ପ୍ରାମାଣ୍ୟାଦ୍ଧିନୟୋ ନିୟମଶ୍ଚ ।

କୁରଳ - ଶକ୍ତି ବୋଧ ପ୍ରସଙ୍ଗରେ ବଲ୍ଲୁବର କହନ୍ତି - ଇଚ୍ଛିତ କର୍ମର ଶକ୍ତି, ନିଜସ୍ୱ ଶକ୍ତି, ଶତ୍ରୁର ଶକ୍ତି ତଥା ଉଭୟର ଶକ୍ତିକୁ ମାପି କର୍ମ ନିମିତ୍ତ ପ୍ରସ୍ତୁତ ହେବା ବିଧେୟ ।

ଅର୍ଥଶାସ୍ତ୍ର - ଶକ୍ତି ଦେଶ କାଳ ବଳାବଳ ଜ୍ଞାନଂ ।

ପୁନଶ୍ଚ - ବିଜିଗ୍ରୀଷ୍ଟ ସମ୍ପନ୍ନଃ ପରସ୍ୟ ଚ ବଳାବଳଂ ଶକ୍ତି ଦେଶ କାଳ ଯାତ୍ରା କାଳ ବଳସମ୍ମୁଥାନ୍ କାଳ ପଶ୍ଚାତ୍ କୋଷକ୍ଷୟ ବ୍ୟୟ - ଲାଭପଦ ଜ୍ଞାତ୍ୱା ବିଶିଷ୍ଟ ବଳୋ ୟାଯାତ୍ ଅନ୍ୟୟାସୀତ୍ ।

କୁରଳ - ବଲ୍ଲୁବର କହନ୍ତି ‘‘ନିଜର କର୍ମ ତଥା ତା’ ପାଇଁ ଆବଶ୍ୟକ ବଳକୁ ଅବଗତ ହୋଇ ତଥା ତତ୍‌ଚିତ୍ତ ହୋଇ ଦୃଢ଼ତାପୂର୍ବକ କାର୍ଯ୍ୟ କରିବା ନିମିତ୍ତ କୌଣସି ଅସମ୍ଭବ ନୁହେଁ ’’ ।

ଅର୍ଥଶାସ୍ତ୍ର - ମନ୍ତ୍ରଶକ୍ତି ଶ୍ରେୟସି ପ୍ରଜ୍ଞାଶାସ୍ତ୍ରଚକ୍ଷୁର୍ହି ରାଜା ଅଳ୍ପେନାପି ପ୍ରୟତ୍ନେ ମନ୍ତ୍ରମାଧାତୁଂ ଶକ୍ତଃ - ବୁଦ୍ଧି ଏବଂ ଶାସ୍ତ୍ର ତଥା ପ୍ରୟତ୍ନ କରି ଭଲଭାବେ ଅନୁଧ୍ୟାନ

କରିବା ଉଚିତ । ଏକଚିତ୍ତ ହୋଇ ଦୃଢ଼ତା ପୂର୍ବକ କର୍ମରେ ପ୍ରବୃତ୍ତ ସେହି ପ୍ରକାର ଅନୁଷ୍ଠାନ କରିବା ବିଧେୟ ।

କୁରଳ - ମହାକବି "ତେରିନ୍ଦୁ ତେଲିତଲ୍" ଅର୍ଥାତ୍ ବିଚାରପୂର୍ଣ୍ଣ ନିର୍ବାଚନ ଅନ୍ତର୍ଗତ ଧର୍ମ, ଅର୍ଥ, କାମ ଓ ପ୍ରାଣଭୟ ଏହି ଚାରି ବିଷୟପ୍ରତି ବିଚାର କରି ଉପଯୁକ୍ତ କର୍ମ କରିବା ଉଚିତ୍ ।

ଅର୍ଥଶାସ୍ତ୍ର - କୈଟିଲ୍ୟ ଧର୍ମପଥ, ଅର୍ଥପଥ, କାମପଥ ଏବଂ ଭୟପଥ- ଏହି ଚାରି ପରୀକ୍ଷାକୁ ବିବେଚନ କରି ଉଲ୍ଲେଖ କରିଛନ୍ତି-

"ତ୍ରିବର୍ଗ ଭୟସଂଶୁଦ୍ଧାନ ମାତ୍ୟାନ୍ ସ୍ୱକ୍ଷ୍ମ କର୍ମସୁ ।
ଅଧିକୁର୍ଯ୍ୟାଦ୍ ଯଥା ଶୌଚ ମିଥ୍ୟାଚାର୍ଯ୍ୟ ବ୍ୟବସ୍ଥିତାଃ" ॥

କୁରଳ - ଶାସକଙ୍କ ସମ୍ପର୍କରେ ତିରୁବଲ୍ଲୁବର କହନ୍ତି - ଯାହାଙ୍କ ଦର୍ଶନ ସୁଲଭ, ଯାହାଙ୍କଠାରୁ କୌଣସି କଠୋର ବଚନ ବାହାରେ ନାହିଁ ତାଙ୍କୁ ରାଜ୍ୟବାସୀ ପ୍ରଶଂସା କରନ୍ତି ।

ଅର୍ଥଶାସ୍ତ୍ର - ଉପସ୍ଥାନଗତଃ କାର୍ଯ୍ୟାର୍ଥିନାମଦ୍ୱାରା - "ସଙ୍ଗ କାରୟେତୁ ।"

କୁରଳ - ଶାସକଙ୍କ ବିଶିଷ୍ଟ ଗୁଣ କୁରଳକାର କହନ୍ତି - ବୁଦ୍ଧିମତ୍ତା ଦାନ, ଉତ୍ସାହ, ସତର୍କତା, ବିଦ୍ୟା ତଥା ନିର୍ଭୀକ ପ୍ରକୃତି, ଦୟା, ଧର୍ମନୀତି ଓ ପ୍ରଜାସଂରକ୍ଷଣ ।

ଅର୍ଥଶାସ୍ତ୍ର - "ତସ୍ମା ନିତ୍ୟୋସ୍ଥିତୋ ରାଜାକୁର୍ଯ୍ୟାଦର୍ଥାନୁଶାସନମ୍" ।
ପୁନଶ୍ଚ - ସ୍ୱକୋ ହି ବ୍ରତମୁତ୍ଥାନଂ ଯଜ୍ଞଃ କାର୍ଯ୍ୟାନୁ ଶାସନମ୍ ।
ଦକ୍ଷିଣା ବୃତ୍ତିସାମ୍ୟଂ ଚ ଦୀକ୍ଷିତସ୍ୟାଭି ଷେଚନମ୍ ॥
ପ୍ରଜାସୁଖେ ସୁଖଂ ରାଜ୍ଞଃ ପ୍ରଜାନାଂ ଚ ହେତୁହିତମ୍ ॥
ନାତ୍ମାପୟିୟଂ ହିତଂ ରାଜ୍ଞଃ ପ୍ରଜାନାମ୍ତୁ ପ୍ରିୟଂ ହିତମ୍ ॥

କୁରଳ - ରାଜା ଓ ଅଧିକାରୀ ବର୍ଗ ନିମ୍ନୋକ୍ତ କାର୍ଯ୍ୟରୁ ନିବୃତ୍ତ ହେବା ଉଚିତ ଯଥା- ଅଭିମାନ, କ୍ରୋଧ, ବିଷୟବାସନା, ଆନନ୍ଦ, କୃପଣତା

ଅର୍ଥଶାସ୍ତ୍ର - "ବିଦ୍ୟାବିନୟ ହେତୁରିନ୍ଦ୍ରୟଜଞ୍ଚଃ, କାମ କ୍ରୋଧ ଲୋଭମାନ ମଦ ତ୍ୟାଗାତ୍ କାର୍ଯ୍ୟଃ" ।

କୁରଳ - ପ୍ରାପ୍ତିର ସୁଅବସର ପ୍ରାପ୍ତ ହେଲେ ଅସମ୍ଭବ କାର୍ଯ୍ୟ ସେ ସମୟରେ କରିନେବା ଉଚିତ୍ ।

ଅର୍ଥଶାସ୍ତ୍ର - ପଦ୍ୟ ବା ପ୍ରୟାତ୍ କର୍ଣୟିତୁ ମୁଚ୍ଛେତୁଂ ବା ଶକ୍ନୁୟାଦ ମିତ୍ରଂ ତଦା ଯଯାତ୍ ।

କୁରଳ - ସୁଶାସନ ସମ୍ପର୍କରେ ବଲ୍ଲୁବର କହନ୍ତି - ବ୍ରାହ୍ମଣଙ୍କ ଗ୍ରନ୍ଥ ଏବଂ ଧର୍ମର ମୂଳ ଆଶ୍ରୟ ସମ୍ରାଟଙ୍କ ରାଜଦଣ୍ଡ ଅଟେ ।

ଅର୍ଥସାସ୍ତ୍ର - କୌଟିଲ୍ୟଙ୍କ କଥନ ହେଉଛି ପବିତ୍ର ମର୍ଯ୍ୟାଦାରେ ଅବସ୍ଥିତ ବର୍ଣ୍ଣାଶ୍ରମ ଧର୍ମଦ୍ୱାରା ନିୟମିତ ଓ ତ୍ରୟୀ ଧର୍ମରୁ ରକ୍ଷିତ ପ୍ରଜା ଦୁଃଖି ହୁଏ ନାହିଁ ।

ମହାକବି ତିରୁବଲ୍ଲୁବର ତାଙ୍କ ମହାକାବ୍ୟ 'କୁରଳ'ରେ ମୁଖ୍ୟତଃ ତିନୋଟି ସିଦ୍ଧାନ୍ତ ଅର୍ଥ, ଧର୍ମ, କାମ, ପରିବେଶିତ ହୋଇଛି । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ ଅନେକ ପ୍ରସଙ୍ଗ 'କୁରଳ'ରେ ସନ୍ନିବେଶିତ ହୋଇଛି । ଭାରତୀୟ ଚିନ୍ତାଧାରର ଉଲ୍ଲେଖନୀୟ ସାମ୍ୟତା ଏଠାରେ ଅତ୍ୟଧିକ ପ୍ରଣିଧାନଯୋଗ୍ୟ ।



# ମତାମତ

ତିରୁବଲ୍ଲୁବରଙ୍କର ତାମିଲ୍ ଦୋହା କୁରଳ ବିଶ୍ୱ ସାହିତ୍ୟରେ ଏକ ଅନୁପମ ସୃଷ୍ଟି । ସକଳ ମାନବୀୟ ସାମାଜିକ, ରାଜନୈତିକ, ବ୍ୟାବହାରିକ ଚଳନୀ ପାଇଁ ଏହି ଦୁର୍ଲ୍ଲଭ ଗ୍ରନ୍ଥ ଗୋଟେ କାଳୋତ୍ତୀର୍ଣ୍ଣ ସମ୍ବିଧାନ । ରାଜା ଠାରୁ ପ୍ରଜା ସମେତ ମଦ୍ୟପ, କାମାସକ୍ତ ପୁରୁଷ, ଅର୍ଥଲିପ୍‌ସୁ ରୂପଜୀବି ନାରୀ ପର୍ଯ୍ୟନ୍ତ ପୁରୁଷ-ସ୍ତ୍ରୀମାନଙ୍କର ଆଚରଣ ଉଚ୍ଚାରଣ ଏହି ଉପଦେଶାତ୍ମକ ଗ୍ରନ୍ଥରେ ସୁଠାମ୍ ରୂପେ ବିନ୍ୟସ୍ତ ହୋଇଛି । ବର୍ଣ୍ଣନା ବିନ୍ୟାସରେ କରଣୀୟ ଅକରଣୀୟ କାର୍ଯ୍ୟ ସମେତ ଚତୁର୍ବର୍ଗର ମୋକ୍ଷକୁ ଛାଡ଼ି ଧର୍ମ, ଅର୍ଥ ଓ କାମ ସମ୍ପର୍କରେ ସମ୍ୟକ୍ ସୂଚନା ଏହି ଗ୍ରନ୍ଥରେ ଅଛି । ବୌଦ୍ଧଧର୍ମରେ ନିର୍ବାଣର ସ୍ୱରୂପ ଅସ୍ପଷ୍ଟ ପରି ଏହି ଗ୍ରନ୍ଥରେ ମଣିଷ ଜୀବନରେ ମୋକ୍ଷର ଆବଶ୍ୟକତାକୁ ସ୍ପଷ୍ଟ ନହେଲେ ବି ବ୍ୟଞ୍ଜିତ କରାଯାଇଛି । ସାଧୁ, ସନ୍ନ୍ୟାସୀ, ଦାନୀ, ଅତିଥି ପ୍ରେମୀ ଗୃହସ୍ଥଙ୍କୁ ଏହି ଗ୍ରନ୍ଥରେ ପ୍ରଶଂସା କରାଯାଇଛି ଅଥଚ ମାଂସାହାରୀ, ଅବିବେକୀ, ମଦ୍ୟପ, କାମାସକ୍ତ ଆଦି ଦୁର୍ଗଣଯୁକ୍ତ ମଣିଷମାନଙ୍କୁ ଏହିଗ୍ରନ୍ଥ ଶତ ମୁଖରେ ନିନ୍ଦା କରିଛି । ସର୍ବୋପରି ଏହିଗ୍ରନ୍ଥ ମାନବିକତାର ସୂଚୀପତ୍ର ରୂପେ ବିବେଚିତ ।

ତାମିଲ ଭାଷାର ଆଦିକବି ତିରୁବଲ୍ଲୁବରଙ୍କର ଦୂରଦୃଷ୍ଟି ସମ୍ପନ୍ନ ବିଚାରବୋଧ ସମ୍ପ୍ରତି ସମାଜରେ ମଧ୍ୟ ଅନତିକ୍ରମଣୀୟ ହୋଇରହିଛି । ଏହି ସର୍ବକାଳିକ ଗ୍ରନ୍ଥର ପ୍ରଥମ ଅନୁସୃଜନ ଇଂରାଜୀ ଭାଷାରେ ୧୮୮୪ରେ ହୋଇଥିଲା । ୧୯୨୪ରେ ହିନ୍ଦୀ ଭାଷାରେ ଏହା ଅନୂଦିତ ହେବା ପରେ ବହୁ ଦେଶୀ ଓ ବିଦେଶୀ ଭାଷାରେ ଏହାର ଅନୁସୃଜନ ହୋଇଛି । ଏହି ଦୁର୍ଲ୍ଲଭ ଗ୍ରନ୍ଥର ଅଭାବ ବୋଧ ଓଡ଼ିଆ ଭାଷାରେ ଥିଲା । ବିଳମ୍ବ ହେଲେ ବି ପ୍ରାଚ୍ୟବିଦ୍ ନିରଞ୍ଜନ ପଣ୍ଡା ଗ୍ରନ୍ଥର ଅନୁସୃତନ କରି ଏହି ଅଭାବବୋଧକୁ ଦୂର କରିଅଛନ୍ତି ।

ପ୍ରାଚ୍ୟବିଦ୍ ଶ୍ରୀଯୁକ୍ତ ପଣ୍ଡାଙ୍କ ସମେତ ଅନେକ ବିଦ୍ୱାନ ଏହି ଗ୍ରନ୍ଥର ରଚନା କାଳ ୧ମ/୨ୟ ଶତାବ୍ଦୀ ରଖିଛନ୍ତି; ମାତ୍ର ଯେଉଁମାନେ ଏହି ଗ୍ରନ୍ଥକୁ ୫ମ/୬ଷ୍ଠ ଶତକରେ ଥୋଇଛନ୍ତି ସେମାନଙ୍କ ମତ ଓ ଯୁକ୍ତି ସହ ମୁଁ ଏକମତ କାରଣ ସଂସ୍କୃତ ଗ୍ରନ୍ଥ ପୂର୍ଣ୍ଣାଙ୍ଗ ମହାଭାରତ, ମନୁସ୍ମୃତି, ନାନା ଉପନିଷଦ, କୌଟିଲ୍ୟ ଅର୍ଥଶାସ୍ତ୍ର, କାମଳକୀୟ ନୀତିଶାସ୍ତ୍ର ଆଦି ଗୁପ୍ତ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଦାକ୍ଷିଣାତ୍ୟ ଅଭିଯାନ ପରେ ବହୁଳ ଭାବେ ପ୍ରସାରିତ ହୋଇଥିଲା । ଆମର ଆଲୋଚ୍ୟ ପ୍ରିୟ ମହାକବି ସେହି ସବୁ ଗ୍ରନ୍ଥକୁ ଅଧ୍ୟୟନର ସୁଯୋଗ ନେଇ ମାନବୀୟ ବ୍ୟାବହାରିକ ଜ୍ଞାନର ପ୍ରଚାର ପ୍ରସାର ପାଇଁ ତାମିଲ ଭାଷାରେ ରଚନା କରିଅଛନ୍ତି ।

ଡ. ସୁଧାକର ଦାସ, ସମ୍ପାଦକ, ଋଷିଦର୍ଶନ



ଅନୁସୃଜକ